

# ବଡ଼ ମଣିଷଙ୍କ

## ପିଲାଦିନ















ମହାପାତ୍ର ପ୍ରକାଶନ

# ବଡ଼ ମଣିଷଙ୍କ ପିଲାଦିନ

ଲେଖକ :

ଶ୍ରୀ ସର୍ବେଶ୍ୱର ମିଶ୍ର

ପ୍ରକାଶକ :

ମହାପାତ୍ର ପ୍ରକାଶନ

ଚଉଧୁରୀ ବଜାର, କଟକ-୯

ମୂଲ୍ୟ—ଟ ୬-୦୦

# ସୂଚୀ ପତ୍ର

# ମହାତ୍ମା ଗାନ୍ଧି

ବାପୁଜୀ ଜଣେ ଜାତୀୟ ନେତା ଭାବରେ ଆମ ଆଗରେ ଯେତେ ବଡ଼, ଜଣେ ଆଦର୍ଶ ମନୁଷ୍ୟ ଭାବରେ ତା'ଠାରୁ ଅଧିକ ବଡ଼ । ତାଙ୍କର ଭଲ ଗୁଣଗୁଡ଼ିକ ସବୁରି ମନରେ ଆନନ୍ଦ ଦେଉଥିଲା ଆଉ ସମସ୍ତଙ୍କୁ ମୁଗ୍ଧ କରୁଥିଲା । ତାଙ୍କ ଗୁଣଗୁଡ଼ିକ କାଉଁରୀକାଠି ପରି ଶତ୍ରୁକୁ ମଧ୍ୟ ମିତ୍ର କରୁଥିଲା ଏବଂ ନିରାଶ ମନରେ ଆଶା ଆଣୁଥିଲା । ସତ କହିବା, ହିଂସା ନ କରିବା, ସମସ୍ତଙ୍କୁ ସମାନ ଆଖିରେ ଦେଖିବା, ପରକୁ ଆପଣା ପରି ଜାଣିବା, ଅନ୍ୟାୟ କଥାକୁ ସାହସର ସହିତ ବିରୋଧ କରିବା,



ଛୋଟ ବଡ଼ ସବୁ କାମ କରିବାରେ ଆନନ୍ଦ ପାଇବା, ସରଳ ଭାବରେ ଚଳିବା, ଅପରର ସୁଖଶାନ୍ତି ପାଇଁ ହସିହସି ଦୁଃଖ କଷ୍ଟ ସହିବା ପ୍ରଭୃତି ଦୁର୍ଲ୍ଲଭ ଗୁଣଗୁଡ଼ିକ ତାଙ୍କ ପାଖରେ ଥିଲା । ତାଙ୍କ ଜୀବନର ବିଭିନ୍ନ ଘଟଣାରେ ଏହି ସବୁ ଗୁଣ ଫୁଟି ଉଠିଥିଲା । ଏଠାରେ ଗପ ଆକାରରେ ତାଙ୍କ ଜୀବନର କେତୋଟି ଘଟଣା ଲେଖାଯାଇଛି ।

ତୁଳସୀ ଦୁଇ ପଦ୍ୟର ବାଦେ

ବାପୁଜୀଙ୍କର ପିଲାଦିନେ ତାଙ୍କର ଜଣେ ସାଙ୍ଗ ଥିଲା । ତା' ସାଥିରେ ମିଳାମିଶା କରିବାକୁ ତାଙ୍କର ମାଆ ଆଉ ବଡ଼ ଭାଇ ପସନ୍ଦ କରୁ ନ ଥିଲେ । କିନ୍ତୁ ଗାନ୍ଧିଜୀ କହୁଥିଲେ, "ମୁଁ ତାକୁ ସୁଧାରି ଭଲ ବାଟକୁ ଆଣିବାକୁ ତା'ର ସାଙ୍ଗ ହୋଇଛି ।"

ଦିନ ପରେ ଦିନ ଗଲା । ସାଙ୍ଗର ଚଗଲାମି ଜଣା ପଡ଼ିଲା । ସେ ଗାନ୍ଧିଜୀଙ୍କୁ କହିଲା, "ଆମେ ମାଂସ ନ ଖାଇ ଏପରି ମଡ଼ିଆ ହୋଇଛୁ । ଯେଉଁ ସାହେବମାନେ ଆମ ଉପରେ ରାଜା ହୋଇଛନ୍ତି, ସେମାନେ ସମସ୍ତେ ମାଂସ ଖାଆନ୍ତି ।" ଗାନ୍ଧିଙ୍କୁ ଏପରି ବହୁତ ବୁଝାଇବାରେ ସେ ଭାବିଲେ ଯେ, ମାଂସ ଖାଇବା ଭଲ । ଏହା ଖାଇଲେ ସେ ବଳୁଆ ଆଉ ନେତା ହେବେ । ଯଦି ଦେଶର ସମସ୍ତେ ମାଂସ ଖାଇବେ, ସେମାନେ ସହଜରେ ଇଂରେଜମାନଙ୍କୁ ନିଜ ଦେଶରୁ ତଡ଼ି ପାରିବେ ବୋଲି ସେ ଭାବିଲେ । ତେଣୁ ସେମାନଙ୍କର ମାଂସ ଖିଆ ଆରମ୍ଭ ହେଲା ।

ଗାନ୍ଧି ତାଙ୍କ ପିତାମାତାଙ୍କୁ ଅତି ଭକ୍ତି କରୁଥିଲେ । ସେ ଭାବିଲେ ଯେ, ସେମାନେ ତାଙ୍କର ମାଂସ ଖିଆ କଥା ଜାଣିଲେ ଅତି ଦୁଃଖିତ ହେବେ । ସେ ସତ କହିବା ସବୁଠାରୁ ବଡ଼ ବୋଲି ମନେ କରୁଥିଲେ । କିନ୍ତୁ ମାଂସ ଖାଇ ବଳୁଆ ହୋଇ ଇଂରେଜମାନଙ୍କୁ ଭାରତରୁ ତଡ଼ି

ଦେଶକୁ ସ୍ୱାଧୀନ କରିବାକୁ ତାଙ୍କର ବଡ଼ ଇଚ୍ଛା ଥିଲା । ଏଥିରେ ସେ ଖୁବ୍ ଟାଣ ଥିଲେ ।

ଏହିପରି ଗୋଟିଏ ବର୍ଷ ଗଲା । ଏଥି ଭିତରେ ପାଞ୍ଚ ଛଅ ଥର ମାଂସ ଖିଆ ସରିଥାଏ । ବାହାରେ ଏପରି ଯେତେବେଳେ ମାଂସ ଖିଆ ହେଉଥିଲା, ଘରେ ଆଉ କିଛି ଖିଆ ହେଉ ନ ଥିଲା । ମାଆ ଖାଇବାକୁ ଡାକିଲେ, 'ପେଟ ଗୋଳମାଳ ହୋଇଛି, ଖାଇବାକୁ ଇଚ୍ଛା ହେଉନାହିଁ' ବୋଲି ଗାନ୍ଧି କହୁଥିଲେ । କିନ୍ତୁ ଏପରି ମିଛ କହିବାକୁ ତାଙ୍କ ମନରେ ଘୋର ଦୁଃଖ ହେଉଥିଲା । ଅନ୍ତର ଭିତରେ ଆଘାତ ଲାଗୁଥିଲା । ନିଜ ମାଆ ପାଖରେ ମିଛ ! ନିଜର ପିଲା ମାଂସ ଖାଇବା ଜାଣିଲେ ତାଙ୍କ ଉପରେ ବଡ଼ିକ ପଡ଼ିଯିବ !! ଏଇ କଥା ତାଙ୍କ ମନରେ ସର୍ବଦା ଆଘାତ କରୁଥିଲା ।

ସେ ଠିକ୍ କଲେ, "ମାଂସ ଖାଇବା ଭଲ । କିନ୍ତୁ ମାଆ ବାପାକୁ ଠକିବା, ମାଂସ ଖାଇବାଠାରୁ ବେଶି ଖରାପ । ତେଣୁ ମାଆ ବାପାକୁ ଲୁଚିକରି ଆଉ ମାଂସ ଖାଇବି ନାହିଁ ।" ଏକଥା ସେ ତାଙ୍କ ସାଥୀଙ୍କୁ କହିଦେଲେ । ସେହି ଦିନଠାରୁ ମାଂସ ଖିଆ ଛାଡ଼ିଦେଲେ ଯେ, ସେ ଆଉ ଦିନେ ମାଂସ ଖାଇ ନ ଥିଲେ ।

ସେହିପରି ଆଉ ଜଣେ ସାଙ୍ଗ ସାଥିରେ ପଡ଼ି ଗାନ୍ଧିଜୀଙ୍କର ବିଡ଼ି ପିଇବା ଅଭ୍ୟାସ ହୋଇଯାଇଥିଲା । ସେ ଚାକରମାନଙ୍କର ପଇସା ଚୋରି କରି ବିଡ଼ି କିଣୁଥିଲେ,

କିନ୍ତୁ ଏହା ତାଙ୍କୁ ଭଲ ଲାଗିଲା ନାହିଁ । ଗୁରୁଜନମାନଙ୍କ ବିନାନୁମତିରେ କିଛି କରିବା ଅନୁଚିତ ବୋଲି ସେ ଭାବୁଥିଲେ । ଏହି କାମ ବଡ଼ ପାପ ବୋଲି ଭାବି ସେ ଥରେ ବିଷ ଖାଇ ମରିଯିବାକୁ ଇଚ୍ଛା କରିଥିଲେ ; କିନ୍ତୁ ମରଣକୁ ଭାରି ଭୟ କରି ସେ ରାମଜୀ ମନ୍ଦିରକୁ ଯାଇ ଦେଅଙ୍କୁ ଦର୍ଶନ କରି ସେଠାରେ ଶୋଇ ରହିଲେ ।

ଏହାପରେ ସେ ବିଡ଼ି ପିଇବା କିମ୍ବା ଚୋରି କରିବା ଏକବାରେ ଛାଡ଼ିଦେଲେ । ଏପରି ଅଭ୍ୟାସକୁ ସେ ଅତି ଘୃଣ୍ୟ ଓ କ୍ଷତିକାରକ ବୋଲି ମନେ ମନେ ଭାବିଲେ । ଆଉ କିଏ ବିଡ଼ି ପିଇଲେ ସେ ସେଠାରେ ବସି ପାରିଲେ ନାହିଁ । ତାଙ୍କୁ ବିଡ଼ି ଧୂଆଁରେ ନିଃଶ୍ୱାସ ବନ୍ଦ ହେଲା ପରି ଲାଗିଲା ।

ସେତେବେଳେ ତାଙ୍କୁ ପନ୍ଦର ବର୍ଷ ହୋଇଥିଲା । ସେ ଭାବିଲେ, "ବାପାଙ୍କ ପାଖକୁ ଯାଇ ମୁଁ ମୋର ସବୁ ଭୁଲ ମାନି ନେବି ।" କିନ୍ତୁ ସାହସ ହେଲା ନାହିଁ । ଚିଠି ଖଣ୍ଡେ ଲେଖି ବାପାଙ୍କ ହାତକୁ ବଢ଼ାଇ ଦେଲେ । ଗାନ୍ଧିଜୀଙ୍କ ଗୋଡ଼ହାତ ଥରୁଥାଏ । ତାଙ୍କ ମୁଣ୍ଡ ଘାଉଁରି ଗଲା । ସେ ଚୁପ୍ ହୋଇ ଠିଆହେଲେ । ତାଙ୍କ ବାପା ଚିଠି ପଢ଼ିଲେ ।

ତାଙ୍କ ଆଖିରୁ ଲୁହ ଧାର ବହିବାକୁ ଲାଗିଲା । କିଛି ସମୟ ପାଇଁ ସେ ଆଖି ଦୁଇଟି ବନ୍ଦ କରିଦେଲେ ।



ଚିଠିଟିକୁ ଠିକ ଠିକ କରି ଚିରଦେଲେ । ଗାନ୍ଧି ମଧ୍ୟ କଇଁ କଇଁ ହୋଇ କାନ୍ଦିବାରେ ଲାଗିଲେ । ବାପାଙ୍କ ମନରେ କେତେ ଦୁଃଖ ହେଲା ସେ ବୁଝିପାରିଲେ । ବାପାଙ୍କ ଆଖିର ଲୁହ ଧାର ଗରପଡ଼ି ତାଙ୍କର ଦେହରେ ଗଳିଗଲା । ସେ ଭାବିଲେ ଯେ ଲୁହରେ ତାଙ୍କର ଦୋଷ ସବୁ ଧୋଇ ହୋଇଗଲା ଓ ସେ ଶୁଦ୍ଧ ହେଲେ । ସେହି ଦିନଠାରୁ ତାଙ୍କ ମନରେ ନିର୍ମଳ ଶାନ୍ତି ଖେଳିଗଲା । ସେ ଭଲ ମଣିଷ ହେବାକୁ ଚେଷ୍ଟା କଲେ ।

କଞ୍ଚା ହାଣ୍ଡିର ଦାଗ ପୋଡ଼ିଲେ ଲିଭେ ନାହିଁ

ଗାନ୍ଧିଜୀ ଛଅ ସାତ ବର୍ଷରୁ ଆରମ୍ଭ କରି ଷୋଳ ବର୍ଷ ପର୍ଯ୍ୟନ୍ତ ପାଠଶାଳାରେ ପଢ଼ିଲେ ; ହେଲେ ସେ କେଉଁଠି ଧର୍ମ ଶିକ୍ଷା ପାଇ ନ ଥିଲେ । ସେ ବୈଷ୍ଣବ ସମ୍ପ୍ରଦାୟରେ ଜନ୍ମି ଥିବାରୁ ବିଷ୍ଣୁ ମନ୍ଦିରକୁ ଯିବାକୁ ତାଙ୍କୁ ସୁବିଧା ମିଳିଥିଲା ।

କିନ୍ତୁ ମନ୍ଦିରର ଆଡ଼ମ୍ବର ତାଙ୍କୁ ସୁଖ ଲାଗୁ ନ ଥିଲା । ତେଣୁ ଏଠାରୁ ମଧ୍ୟ ସେ ଶିକ୍ଷା ପାଇ ନ ଥିଲେ ।

ମନ୍ଦିର ପାଠଶାଳାରେ ମିଳି ନ ଥିବା କିଛି ଗାନ୍ଧିଜୀ ତାଙ୍କ ଧାଇଠାରୁ ପାଇଥିଲେ । ସେ ପିଲାଦିନେ ଭୂତ ପ୍ରେତଙ୍କୁ ଘୋର ଭୟ କରୁଥିଲେ । ଏହି ରୋଗ ପାଇଁ ତାଙ୍କର ଧାଇ "ରାମ ନାମ" ବଡ଼ ଔଷଧ ବୋଲି ବତାଇଥିଲେ । ତେଣୁ ଭୂତ ଭୟରେ ଗାନ୍ଧିଜୀ ପିଲାଦିନୁ ରାମ ନାମ ଜପ କରୁଥିଲେ । ଏହି ଅଭ୍ୟାସ ବେଶିଦିନ ରହି ନ ଥିଲେହେଁ ପିଲାଦିନେ ତାଙ୍କ ମନରେ ବୁଣାଯାଇ ଥିବା ମଞ୍ଜି ବଡ଼ଦିନକୁ ଗଛ ହୋଇ ବଢ଼ିଥିଲା । ବଡ଼ ହେଲେ ମଧ୍ୟ ରାମ ନାମ ଗାନ୍ଧିଜୀଙ୍କର ଅମୋଘ ଶକ୍ତି ଥିଲା । ଏହା ମୂଳରେ ଥିଲା ତାଙ୍କର ସେହି ଧାଇ ରମ୍ଭା ବାଈର କଥା ।

କିନ୍ତୁ ରାମାୟଣର ପାରାୟଣ ପଠନ) ଗାନ୍ଧିଜୀଙ୍କ ମନରେ ଗଭୀର ଦାଗ ଆଙ୍କିଥିଲା ତାଙ୍କର ବାପା ରାମଜୀ ମନ୍ଦିରରେ ପ୍ରତି ରାତିରେ ରାମାୟଣ ଶୁଣୁଥିଲେ । ବାଲେଶ୍ୱରର ଲାଧା ମହାରାଜା ପୁରାଣପାଠ କରୁଥିଲେ । ଲୋକେ କହନ୍ତି ଯେ, ତାଙ୍କୁ କୁଷ୍ଠରୋଗ ଧରିଥିଲା; କିନ୍ତୁ ସେ କିଛି ଔଷଧ ଖାଇ ନ ଥିଲେ । ସେ ମହାଦେବଙ୍କ ଉପରେ ଚଢ଼ାଯାଉଥିବା ବେଲପତ୍ରକୁ ଖଣ୍ଡିଆ ଜାଗାରେ ବାନ୍ଧି ଦେଉଥିଲେ ଏବଂ ରାମାୟଣ ଜପ କରୁଥିଲେ ।

ଶେଷରେ ତାଙ୍କର ସେ ଅସାଧ୍ୟ ରୋଗ ଭଲ ହୋଇ-ଯାଇଥିଲା ।

ଲାଧା ମହାରାଜାଙ୍କ ସ୍ୱର ଅତି ମଧୁର ଥିଲା । ସେ ରାମାୟଣ ପାଠ କରୁଥିଲାବେଳେ ନିଜେ ମୁଗ୍ଧ ହେଉଥିଲେ ଏବଂ ଶ୍ରୋତାମାନଙ୍କୁ ମଧ୍ୟ ମୁଗ୍ଧ କରୁଥିଲେ । ଗାନ୍ଧିଜୀ ବଡ଼ ହେଲା ପରେ ମଧ୍ୟ ରାମାୟଣ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ରଖିଥିଲେ । ଏହାର ମୂଳରେ ଥିଲା ପିଲାଦିନର ସେହି ରାମାୟଣ ଶ୍ରବଣ ।

ଗାନ୍ଧିଜୀଙ୍କର ସବୁ ପ୍ରକାର ଧର୍ମ ଓ ସମ୍ପ୍ରଦାୟ ପ୍ରତି ସମାନ ଭାବ ଥିଲା । ସବୁ ଧର୍ମକୁ ସେ ଆଦର କରୁଥିଲେ । ପିଲାଦିନୁ ସେ ଏହି କଥା ଶିଖିଥିଲେ । ତାଙ୍କ ପିତା ମାତା ବୈଷ୍ଣବ ମନ୍ଦିରକୁ ଯାଉଥିଲେ । ଗାନ୍ଧିଜୀ ମଧ୍ୟ ପିଲାଦିନେ ସେମାନଙ୍କ ସାଙ୍ଗରେ ଯାଉଥିଲେ ।

ଆଉ ମଧ୍ୟ ଗାନ୍ଧିଜୀଙ୍କ ପିତାଙ୍କ ପାଖକୁ ଅନେକ ଜୈନ ସାଧୁ ଆସୁଥିଲେ । ସେ ସେମାନଙ୍କୁ ଭିକ୍ଷା ଦେଉଥିଲେ । ଏହାବ୍ୟତୀତ ପିତାଙ୍କର ଅନେକ ମୁସଲମାନ ଓ ପାର୍ଶି ବନ୍ଧୁ ଥିଲେ । ସେମାନେ ସମସ୍ତେ ନିଜ ନିଜର ଧର୍ମ ବିଷୟରେ ଅନେକ କଥା ଶୁଣାଉଥିଲେ । ପିତା ଏ ସବୁ ଆଗ୍ରହରେ ଶୁଣୁଥିଲେ । ଗାନ୍ଧିଜୀ ସେଠାରେ ରହି ସବୁ କଥା ଶୁଣି ଶୁଣି ତାଙ୍କ ମନରେ ସବୁ ଧର୍ମ ପ୍ରତି ସମାନ ଭାବ ଜାତ ହୋଇଥିଲା । କୌଣସି ଧର୍ମ ବଡ଼ ନୁହେଁ,

କୌଣସି ଧର୍ମ ସାନ ନୁହେଁ ବୋଲି ସେ ଭଲ ଭାବରେ ଜାଣିଥିଲେ ।

ଗାନ୍ଧିଜୀଙ୍କ ଅନ୍ତରରେ ଏକ ଗଭୀର ରେଖାପାତ ହୋଇଥିଲା ଯେ, ଏହି ସୃଷ୍ଟି ନୀତି ନିୟମ ଉପରେ ଚାଲୁଛି । ଏସବୁ ନୀତି ସତ୍ୟ ଉପରେ ପ୍ରତିଷ୍ଠିତ । ସବୁ ଧର୍ମର ମୂଳ ନୀତି ସମାନ ।

ଗାନ୍ଧିଜୀଙ୍କ ହୃଦୟରେ ଗୋଟିଏ ଗୀତ ମଧ୍ୟ ଲେଖି ହୋଇ ଯାଇଥିଲା । ସେହି ଗୀତଟିର ମର୍ମ ହେଉଛି—

'ଯେ ଆମକୁ ପାଣି ପିଆଇବ, ତାକୁ ଆମେ ଭଲ ଭୋଜନ ଦେବା । ଯେ ଆମ ଆଗରେ ମୁଣ୍ଡ ନୁଆଁଇବ, ତାକୁ ଆମେ ଦଣ୍ଡବତ ପ୍ରଣାମ କରିବା । ଯେ ତମ୍ବା ପଇସା ଦେବ, ତାକୁ ଆମେ ସୁନାମୋହର ଦେବା । ଯେ ଆମର ଜୀବନ ରଖିବ, ତା'ର ଦୁଃଖ ଦୂର କରିବାକୁ ଆମେ ମରିବା । ଯେ ଆମର ମଙ୍ଗଳ କରିବ, ଆମେ ମନ ବଚନ ଓ କାର୍ଯ୍ୟରେ ତା'ର ଦଶଗୁଣ ମଙ୍ଗଳ କରିବା । ଯେ ଅନିଷ୍ଟକାରୀର ମଙ୍ଗଳ କରେ ସେ ବିଶ୍ୱବିଜେତା ଅଟେ ।'

ଅପକାର ବଦଳରେ ଅପକାର କରିବା ଉଚିତ ନୁହେଁ, ଅପକାର ବଦଳରେ ଉପକାର କରିବା ଗାନ୍ଧିଜୀଙ୍କ ଜୀବନର ମୂଳମନ୍ତ୍ର ହୋଇଥିଲା ।

**ବଡ଼ ହୋଇ ବଡ଼ାଇ ନାହିଁ**

୧୯୦୪ ମସିହାର କଥା । ବାପୁଜୀ ଆଫ୍ରିକାରେ ଗୋରାମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଲଢ଼ାଇ କରୁଥିଲେ । କିନ୍ତୁ ସେ ଏତେ ଜଣାଶୁଣା ହୋଇ ନ ଥିଲେ । ଏହି ସମୟରେ ସେ ଥରେ ଲଣ୍ଡନ ବୁଲି ଯାଇଥିଲେ । ସେଠାରେ ଭାରତର ଅନେକ ଶିକ୍ଷିତ ଯୁବକ ରହି ପାଠ ପଢ଼ୁଥିଲେ । ସେମାନେ ଭାରତର ସ୍ୱାଧୀନତା ବିଷୟରେ କଥାବାର୍ତ୍ତା ହେଲେ । ଗୋଟିଏ ସଭା ସେମାନଙ୍କର ହେବାର ଥିଲା । କେତେଜଣ ଭାରତୀୟ ନେତା ମଧ୍ୟ ସେତେବେଳେ ସେଠାରେ ଥିଲେ । ଏହି ଅବସରରେ ଗୋଟିଏ ବୈଠକ ହେବାର ଯୋଗାଡ଼ ହେଲା । ବିଲାତର ସ୍କୁଲ ଆଡ଼େ ଭାରତୀୟ ଯୁବକଗଣ ରହୁଥିଲେ । ସେମାନେ ସମସ୍ତେ ଏକାଠି ହେଲେ । ବୈଠକର କାର୍ଯ୍ୟକ୍ରମ ଭିତରେ ଭୋଜନ ଓ ଭାଷଣ ପ୍ରଧାନ ଥିଲା । ଏହି ଉଦ୍ଦେଶ୍ୟରେ ଗୋଟିଏ ଭୋଜନାଳୟ (ହୋଟେଲ) ଭଡ଼ା ନିଆଗଲା ।

ଏହାପରେ ସବୁ ଠିକ୍ ହୋଇଗଲା । କିନ୍ତୁ ସଭାପତି କିଏ ହେବ ? ସମସ୍ତ ଭାରତୀୟ ନେତା ନାରାଜ ହେଲେ । କେବଳ ଗାନ୍ଧିଜୀ ଏଥିରେ ରାଜି ହେଲେ ; କିନ୍ତୁ ଗୋଟିଏ ସର୍ତ୍ତ ଉପରେ ଭୋଜନରେ ମାଂସ ହେବ ନାହିଁ, ଆଉ ଭାରତୀୟ ଢଙ୍ଗରେ ଭୋଜି ହେବ ।

ଯୁବକମାନେ ଏହି ସର୍ତ୍ତରେ ରାଜି ହେଲେ । ଗୋଟିଏ ନୂଆ ଘର ଭଡ଼ା ନିଆଗଲା । ସବୁ ଦରକାରୀ ଜିନିଷ

କିଣାଗଲା, ଆଉ ସମସ୍ତେ କାମରେ ଲାଗିଲେ । କିଏ କିନିଷପତ୍ର ଦାୟିତ୍ୱରେ ରହିଲେ ତ କିଏ ଷ୍ଟୋରେ ରହିଲେ, କିଏ ପରିବାପତ୍ର କାଟିଲେ ତ କିଏ ମସଲା ଠିକ୍ କରିବାରେ ଲାଗିଲେ । କେହି ପରିଷ୍କାର ଭାର ନେଲେ ତ କେହି ସଜାସଜିରେ ରହିଲେ । ସମସ୍ତ ଯୁବକ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରୁ ଆସିଥିଲେ । ଜଣେ ଅନ୍ୟ ଜଣକୁ ଚିହ୍ନି ନ ଥିଲେ; କିନ୍ତୁ ସମସ୍ତେ ନିଜ ଦେଶକୁ ଚିହ୍ନିଥିଲେ ଆଉ ଭଲ ପାଉଥିଲେ । ତେଣୁ ସମସ୍ତେ ପରସ୍ପରକୁ ଭାଇ ବୋଲି ମନେ କରି ଆନନ୍ଦରେ ସବୁ କାର୍ଯ୍ୟ କରି ଦେଇ ଯାଉଥିଲେ ।

ସେମାନଙ୍କ ଭିତରେ ଜଣେ ଧଡ଼ିଆ ପତଳା ହିନ୍ଦୁସ୍ଥାନୀ ଯୁବକ ଥିଲେ । ସେ ଅତି କାମିକା । ସେ ନିଜେ ଏକା ବାସନ ମାଜିବା ଆଉ ପରିବା କାଟିବା କାମ କରି ନେଉଥିଲେ । କେତେ ଘଣ୍ଟା ଗଲା । କିନ୍ତୁ ସେ ସେହିପରି କାମରେ ଲାଗିଥିଲେ । ଦି’ ପହରରୁ ଆସି ସଞ୍ଜ ହେଲାଣି ।

ଶେଷରେ ଜଣେ ମୁଖିଆ ଲୋକ ସେଠାକୁ ଆସିଲେ । ହଠାତ୍ ତାଙ୍କର ଆଖି ସେହି ପତଳା ହିନ୍ଦୁସ୍ଥାନୀ ଯୁବକଙ୍କ ଉପରେ ପଡ଼ିଲା । ଏ କିଏ’ଣ ? ସେ ଭଲ କରି ତାଙ୍କୁ ନିରେଖି ଚାହିଁଲେ । ପାଟିରୁ କଥା ବାହାରିଲା ନାହିଁ । ଆଖ ପାଖରେ ଯେତେ ଯୁବକ ଥିଲେ, ସମସ୍ତେ କାଠ ପରି ଠିଆହୋଇ ଚାହିଁଲେ । ସମସ୍ତଙ୍କ ମନରେ କେତେ

କଥା ଚେଇଁ ଉଠିଲା । ଜଣେ ସାହସ ଧରି ପଚାରି ଦେଲେ "ଆପଣ କିଏ ?"

ପତଳା ଯୁବକ ଜଣକ ଧୀର ସ୍ୱରରେ ଉତ୍ତର ଦେଲେ "ଗାନ୍ଧି ।"

ସମସ୍ତେ କାବା ହୋଇଗଲେ । ସମସ୍ତେ ଜାଣିଲେ ଗାନ୍ଧିଜୀ ସବୁଠାରୁ ବେଶୀ ପରିଶ୍ରମୀ । ଯେଉଁ ଲୋକ ଦକ୍ଷିଣ ଆଫ୍ରିକାରେ ମହାପୁରୁଷ ହୋଇଛନ୍ତି, ସେ ସେଠାର ଗୋରା ସାହେବମାନଙ୍କ ବୁଦ୍ଧି ବଣା କରିଛନ୍ତି, ସେହି ଗାନ୍ଧିଜୀ ଆଜି ଚୁପଚାପ ବାସନ ମଜାଠାରୁ ପଇଖାନା ସଫା କାଟିବାଯାଏ ସବୁ କାମ କରି ଯାଉଛନ୍ତି । ସମସ୍ତଙ୍କ ମନରେ ଆଶ୍ଚର୍ଯ୍ୟର ଭାବ ଖେଳିଗଲା; ଏହି ସରଳ ମହାପୁରୁଷଙ୍କ ପାଖରେ ସମସ୍ତଙ୍କର ମୁଣ୍ଡ ନଇଁ ଆସିଲା ।

ସମସ୍ତେ ମିଳି ହାତଯୋଡ଼ି ଗାନ୍ଧିଜୀଙ୍କୁ କାମ ବନ୍ଦ କରିବାକୁ ଅନୁରୋଧ କଲେ । କିନ୍ତୁ ସେ କି ବନ୍ଦ ହେବା ଲୋକ ! ସେ ସେହିପରି କାମରେ ଲାଗି ରହିଲେ । ସେ ନିଜେ ଖାଦ୍ୟ ପରଶିଲେ, ବାସନ ମାଜିଲେ ଆଉ ଶେଷରେ ସଭାରେ ସଭାପତି ହୋଇ ଭାଷଣ ବି ଦେଲେ । ଏହିପରି ସବୁ କାମରେ ଆଗୁଆ ହେଉଥିବା ଲୋକ ଅଛନ୍ତି ?

ନିରୋଗ ଦେହ ଦେଶ ସେବାର ପହିଲି ପାହାଚ

ଥରେ ଜଣେ ଭଦ୍ରଲୋକ ଗାନ୍ଧିଜୀଙ୍କ ପାଖକୁ ଆସିଲେ । ସେ ଭଲ ଇଂରେଜୀ ଜାଣିଥିଲେ । ନିଜକଥାରେ

ସେ କଲେଜ ପଢ଼ା ଛାଡ଼ି ଆସିଥିଲେ । ସେ ଭାବିଲେ ଭଲ ଭାବରେ ଇଂରେଜୀରେ ଲେଖାଲେଖି କରି ନିଜ ଦେଶର ସେବା କରିବେ । ସେତେବେଳେ ଗାନ୍ଧିଜୀ ନୂଆ କରି ଆଶ୍ରମ ଗଢ଼ୁଥିଲେ । ସେହି ବାବୁ ଗାନ୍ଧିଜୀଙ୍କୁ କହିଲେ, "ମୋ ପାଇଁ କଣ ଉପଯୁକ୍ତ କାମ ଅଛି ଜଣାନ୍ତୁ ।"



ସେ ଭାବିଥିଲେ ଗାନ୍ଧିଜୀ ତାଙ୍କୁ ଇଂରେଜୀରେ ଲେଖା ଲେଖି କରିବାକୁ କହିବେ । ସେ ସମୟରେ ଗାନ୍ଧିଜୀ ଗହମ ସଫା କରୁଥିଲେ । ସେ କହିଲେ, "ବେଶ୍, ଭଲକଥା । ଏମାନେ ଗହମ ଚୁରୁଛନ୍ତି ଆପଣ ଟିକିଏ ସାହାଯ୍ୟ କରନ୍ତୁ ।" ସେ ଭଦ୍ରଲୋକ ବିସ୍ମିତ ହେଲେ । ତାଙ୍କୁ ବି ବହୁତ ଖରାପ ଲାଗିଲା । କିନ୍ତୁ ମନା କରିବେ କିପରି ? ମନ ମାରି କହିଲେ, "ନିଶ୍ଚୟ ସାହାଯ୍ୟ କରିବି ।"

ସେ ଗହମ ଚୂରିବାରେ ଲାଗିଲେ । ଉପରେ ସେ ଶାନ୍ତ ଥିଲେ ; କିନ୍ତୁ ତାଙ୍କ ମନରେ ଭୀଷଣ ଝଡ଼ ଆରମ୍ଭ ହୋଇଗଲା । ସେ ଭାବିବାରେ ଲାଗିଥାନ୍ତି, "ବଳେ ବଳେ କାହିଁକି ଫାଶରେ ପଡ଼ିଲି ? କେଡ଼େ କଷ୍ଟ । ଗାନ୍ଧିଜୀ କିପରି ଲୋକ ! ଭଲ ଇଂରେଜୀ ଜାଣିବା ଲୋକ ପୁଣି ଗହମ ଚୂରିବେ ?" ତେବେ ଗ୍ରାମ ଗ୍ରାମ କରି କୌଣସି ପ୍ରକାରେ ଘଣ୍ଟାଏ ଚୂରିଲେ । ଶେଷରେ ଗାନ୍ଧିଜୀଙ୍କ ପାଖକୁ ଯାଇ କହିଲେ, "ବହୁତ ସମୟ ହେଲାଣି । ବର୍ତ୍ତମାନ ଯିବାକୁ ଇଚ୍ଛା କରୁଛି ।"

ଗାନ୍ଧିଜୀ ପଚାରିଲେ, "ବସନ୍ତୁ, ବ୍ୟସ୍ତ କାହିଁକି ହେଉଛନ୍ତି ?" ସେ ଲୋକ ପ୍ରକୃତରେ ବଡ଼ ବ୍ୟସ୍ତ ହେଉଥିଲେ । କିନ୍ତୁ ସେ କହିଲେ, "ନାହିଁ ନାହିଁ ବ୍ୟସ୍ତ ହେଉନାହିଁ ।" ଗାନ୍ଧିଜୀ କହିଲେ, "ତେବେ ଘରକୁ ଶୀଘ୍ର ଫେରିବାକୁ ପଡ଼ିବ, ନା ?"

ସେ କହିଲେ, "ହଁ ଆଜ୍ଞା, ଜରୁରୀ କାମ ଅଛି ।" ଗାନ୍ଧିଜୀ ପଚାରିଲେ, "କି କାମ ଅଛି ?" ସେ ଲୋକ କହିଲେ, "ଆଜ୍ଞା ରାତିରେ ରୋଷାଇ କରିବା ବିଳମ୍ବ ହୋଇଯିବ । ମୁଁ ସନ୍ଧ୍ୟାବେଳକୁ ଖାଇଦିଏ । ସେ ସମୟ ଆସି ହେଲାଣି ।"

ଗାନ୍ଧିଜୀ ହସିବାରେ ଲାଗିଲେ । କହିଲେ, "ଏଥିପାଇଁ ଘରକୁ ଯିବା ଜମା ଦରକାର ନାହିଁ । ଆମ ଖାଇବା ବି ବର୍ତ୍ତମାନ ତିଆରି ହୋଇଯିବ । ଆପଣଙ୍କ ସାଙ୍ଗରେ ଥରେ

ଭୋଜନ କରିବାର ସୁଯୋଗ ମୋତେ ଦିଅନ୍ତୁ । ଆମ ଲୁଣ-ରୁଟି ଆପଣ ପସନ୍ଦ କରିବେ କି ନାହିଁ । ମୁଁ ଆପଣଙ୍କ କାମରେ ଲଗାଉଛୁ । ଆପଣଙ୍କ କଥା କରି ପାରିଲି ନାହିଁ । କ୍ଷମା କରିବେ, ବର୍ତ୍ତମାନ ଖାଇବା ସମୟରେ କଥାବାର୍ତ୍ତା ହେବ ।"

ସେ ବାବୁ କ'ଣ କରିବେ ? ତାଙ୍କୁ ରହିବାକୁ ପଡ଼ିଲା । ଅଳ୍ପ ସମୟ ପରେ ଖାଇବା ସମୟ ହେଲା । ଭୋଜନ ଏକବାରେ ସାଧା । ଶୁଖିଲା ରୁଟି, ଭାତ, ତରକାରୀ ଆଉ ଡାଲିପାଣି । ଘିଅ ନାହିଁ, ଦୁଧ ନାହିଁ । ଆଚାର ନାହିଁ କି କିଛି ମସଲାଦିଆ ଛୁଙ୍କ ତରକାରୀ ନାହିଁ । ବାପୁଜୀ ସେହି ଭଦ୍ରଲୋକଙ୍କୁ ନିଜ ପାଖରେ ବସାଇଲେ । ବଡ଼ ଆଦରରେ ଖାଇବା ଯୋଗାଡ଼ କଲେ । ଖାଇବା ସଙ୍ଗେ କଥା ବି ଆରମ୍ଭ ହୋଇଗଲା; କିନ୍ତୁ ସେ ବାବୁଙ୍କୁ ବଡ଼ ଅଡୁଆ ଲାଗିଲା । ସେ ଅସଲ ପକ୍କା ଆଉ ମିଷ୍ଟାନ୍ନ ଖାଉଥିବା ଲୋକ । ପୁଣି ଏଠି ଶୁଖିଲା ରୁଟି । ଖଣ୍ଡେ ରୁଟି ପାଟିରେ ପୂରାଇ ଢୋକେ ପାଣି ପିଇବାରେ ଲାଗିଲେ । ତେବେ ବି ଗୋଟେ ରୁଟି ପୂରା ଖାଇପାରିଲେ ନାହିଁ ।

ଏତେବେଳେ ଯାଇ ଛୁଟି ମିଳିଯା'ନ୍ତା; ତେବେ ବି ରକ୍ଷା ପାଇଯାଆନ୍ତେ । ଏଠାରେ ନିଜେ ବାସନ ମାଜିବା ଦରକାର । ଯାହାହେଉ ସେ କାମ ବି ହେଲା; ତେବେ ଯାଇଁ ଯିବାପାଇଁ ତାଙ୍କୁ ଅନୁମତି ମିଳିଲା । ଯିବା ସମୟରେ ବାପୁଜୀ କହିଲେ, "ଆପଣ ଦେଶ ସେବା କରିବାକୁ ଇଚ୍ଛା

କରୁଛନ୍ତି । ଏହା ପ୍ରଶଂସାର କଥା । ଆପଣଙ୍କର ବିଦ୍ୟା ଓ ଜ୍ଞାନର ଯଥେଷ୍ଟ ସଦ୍‌ବ୍ୟବହାର ହୋଇପାରିବ । କିନ୍ତୁ ଏଥିପାଇଁ ଶରୀର ନିରୋଗ ଓ ଶକ୍ତିଶାଳୀ ହେବା ଦରକାର । ଆପଣ ଆଜିଠାରୁ ଏଥିପ୍ରତି ମନ ଦିଅନ୍ତୁ । ଏହା ହେବ ଆପଣଙ୍କର ଦେଶ ସେବାର ପହିଲି ପାହାଚ ।”

ଜୀବନକୁ ଡର ନାହିଁ ଯାହାର

ବିହାରର ଚମ୍ପାରଣରେ ଗାନ୍ଧିଙ୍କ ସତ୍ୟାଗ୍ରହର ଏକ ପ୍ରସିଦ୍ଧ ଲଢ଼େଇ ହୋଇଥିଲା । ସେଠାରେ ଗୋରା ସାହେବ ଲୋକମାନଙ୍କୁ ବଡ଼ ହଇରାଣ କରୁଥିଲେ । ସେଠି କ’ଣ ପ୍ରକୃତରେ ହେଉଛି ତାହା ଦେଖିବାକୁ ସେ ଯାଇଥିଲେ । ସେ ଲୋକମାନଙ୍କ ମନରେ ନୂଆ ଆଶା ଉତ୍ସାହର ଆଲୁଅ ଜାଳଦେଲେ । ଜନତା ନୂତନ ବଳ ଓ ସାହସରେ ଜାଗି ଉଠିଲେ ।

ଗୋରା ସାହେବ ସେ ପର୍ଯ୍ୟନ୍ତ ନିଜର ମନମୁଖୀ ଅତ୍ୟାଚାର କରୁଥିଲେ । କେହି ପାଟି ଫିଟାଇବାର ଯୁ’ ନ ଥିଲା । କିନ୍ତୁ ସେତେବେଳେ ଏଇ ଗୋଟିଏ ଲୋକ ନିରବ ନିସ୍ପନ୍ଦ ଭୂମିରେ ଝଡ଼ ସୃଷ୍ଟି କରିଦେଲେ । ସାହେବ ନିଆଁ ହୋଇ ଉଠିଲେ । ଏଇ ସମୟରେ ଜଣେ ଲୋକ ଆସି ବାପୁଜୀଙ୍କୁ କହିଲା, “ଆଜ୍ଞା, ଏଠାରେ ଗୋରା ବଡ଼ ଖରାପ ।”

“କିପରି ?” ବାପୁ ପଚାରିଲେ ।

ଆପଣଙ୍କୁ ମାରିଦେବାକୁ ଚାହୁଁଛି । ସେ ସେଥିପାଇଁ ଲୋକ ମଧ୍ୟ ଲଗାଇ ସାରିଲାଣି । "ସତେ ?" ବାପୁ ପଚାରିଲେ ।

"ହଁ ଆଜ୍ଞା," ଲୋକଟି ଉତ୍ତର ଦେଲା । ବାପୁଜୀ ସବୁ କଥା ଶୁଣିଲେ । ଏହାପରେ ବାପୁ ଦିନେ ଗୋରାଙ୍କ କୋଠିରେ ଯାଇ ପହଞ୍ଚିଲେ । ରାତି ସମୟ । ନିଶା ଗର୍ଜୁଛି । ଚାରିଆଡ଼ ଅନ୍ଧାର ଆଉ ନିର୍ଜନ । ଗୋରା ସାହେବ ବି ଏକୁଟିଆ ଥିଲେ । ସେ ଜଣକୁ ହଠାତ୍ ଦେଖି ପଚାରିଲେ, "ତୁମେ କିଏ ?"



"ଗାନ୍ଧି," ବାପୁଜୀ ଦୃଢ଼ ଭାବରେ ଉତ୍ତର ଦେଲେ । ଗୋରା ସାହେବ ଆଶ୍ଚର୍ଯ୍ୟାନ୍ୱିତ ହେଲେ, ସେ ଧୀର ସ୍ୱରରେ ପୁଣି ପଚାରିଲେ, "ଗାନ୍ଧି !"

"ହଁ ମୁଁ ଗାନ୍ଧି । ମୁଁ ଶୁଣୁଛି ତୁମେ ମୋତେ ମାରିବାକୁ ଚାହୁଁଛ, ତୁମେ ମଧ୍ୟ ଲୋକଲଗେଇ ସାରିଲଣି ।"

ସାହେବ କାଠ ଭୂତପରି ଠିଆ ହୋଇ ରହିଲେ । ସେ ଭାବିଲେ, "କ'ଣ ମୁଁ ସ୍ୱପ୍ନ ଦେଖୁଛି କି ?" ବାପୁଜୀ କହିଲେ, ମୁଁ କାହାକୁ କହିନାହିଁ । ଏକୁଟିଆ ଏଠାକୁ ଆସିଛି । ମାରିବାକୁ ଇଚ୍ଛା ଯଦି ମାରିଦିଅ ।"

ବିଚରା ଗୋରା ସାହେବ ବିସ୍ମିତ ହୋଇ ବାପୁଜୀଙ୍କ ତାଳୁରୁ ତଳପାଯାଏ ଚାହିଁଗଲେ । କଥା କହିବାକୁ ପାଟି ଫିଟିଲା ନାହିଁ, ଜିଭ ମଧ୍ୟ ଲେଉଟିଲା ନାହିଁ । ଏପରି ଗାନ୍ଧିଙ୍କ ପରି ଭୟକୁ ଜିଣିବା ଲୋକ ଦୁନିଆରେ ଆଉ କେବେ ଦେଖାଥିଲା ?

"ଜୀବନକୁ ଡର ନାହିଁ ଯା'ର
କିଏ କ'ଣ ବା କରିବ ତା'ର ?"



# ସର୍ଦ୍ଦାର ପଟେଲ

ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏଇ ଦେଶର ମଙ୍ଗଳ ପାଇଁ ନିଜର ସବୁ ସୁଖ ଶାନ୍ତି ବଳି ଦେଇଥିଲେ । ଭାରତର ସ୍ୱାଧୀନତା ଲଢ଼େଇରେ ସେ ଯେଉଁ ଶକ୍ତିଶାଳୀ ନେତୃତ୍ୱ ଦେଇଥିଲେ, ସେଥିଯୋଗୁ ତାଙ୍କୁ 'ସର୍ଦ୍ଦାର' କୁହାଯାଏ ।



ସେ ଭୟ କ'ଣ ଜାଣି ନ ଥିଲେ । ନ୍ୟାୟପାଇଁ ସେ ଅତ୍ୟନ୍ତ ଦୃଢ଼ ରହୁଥିଲେ । ସାଧାରଣ ଲୋକଙ୍କ ସୁବିଧାଲାଗି, ନ୍ୟାର୍ଯ୍ୟ ଦାବୀ ପୂରଣ କରିବା ପାଇଁ ସେ କୌଣସି ବାଧାବିଘ୍ନର ସମ୍ମୁଖୀନ ହେବାକୁ ସେ ପଛାଉ ନ ଥିଲେ । ଏହିପରି ଦୃଢ଼ ନୀତି, ସାହସ ଓ ବାହାଦୂରୀ ପାଇଁ ତାଙ୍କୁ ସାରା ଭାରତରେ

'ଲୁହାର ମଣିଷ' କୁହାଯାଏ । ଏଠାରେ ଲେଖାଥିବା ତାଙ୍କ ଜୀବନର ଗୋଟିଏ ଘଟଣାରୁ, ଲୋକଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସେ କେତେ ବ୍ୟାକୁଳ ହେଉଥିଲେ ତାହା ଜଣା ପଡ଼େ ।

ସବୁ ବିପଦ ଆପଦର ସାଥୀ

୧୯୨୭ ମସିହା ଜୁଲାଇ ମାସରେ ଗୁଜୁରାଟରେ ବଡ଼ ଭୟଙ୍କର ଝଡ଼ତୋଫାନ ହୋଇଥିଲା । ଶହ ଶହ ବର୍ଷ ଭିତରେ କେବେ ଯେ ଏପରି ଝଡ଼ବର୍ଷା ହୋଇଥିଲା, ତାହା ବୁଢ଼ାବୁଢ଼ୀମାନେ ମଧ୍ୟ କହିପାରନ୍ତି ନାହିଁ । ଜଳସ୍ଥଳ ସବୁ ଏକପ୍ରକାର ହୋଇଗଲା । ଗଡ଼ିଆ ଖାଲ ଗଳିକାମୟ । ଆକାଶରେ ବତାଶ ସାଇଁ ସାଇଁ ଗର୍ଜିଲା । ଛଅ ଦିନ ଛଅ ରାତି ପର୍ଯ୍ୟନ୍ତ ଝଡ଼ ବହିବାରେ ଲାଗିଲା । ସାତଦିନ ହେଲା, ତେବେ ପବନର ବିରାମ ନାହିଁ । ଲୋକମାନେ ଭୟଭୀତ ହୋଇ ପଡ଼ିଲେ ।

ସେଦିନ ରାତିରେ ଅହମଦାବାଦ ସହରର ଗୋଟିଏ ଘରେ ସର୍ଦ୍ଦାର ଭାବିବାରେ ଲାଗିଲେ । ସେ ଆଦୌ ଶୋଇ ପାରିଲେ ନାହିଁ । ତାଙ୍କ ମନ ବ୍ୟାକୁଳ ହେଲା । ରାତି ୧୨ଟା ବାଜିଲାବେଳକୁ ସର୍ଦ୍ଦାର ଘର ଛାଡ଼ି ବାହାରିଲେ । କଟି କଟି ଅନ୍ଧାର ରାତି । ମୁହଁକୁ ମୁହଁ ଦିଶୁ ନ ଥାଏ । ମେଘ ଘୁ ଘୁ ଗର୍ଜ୍ଜନ କରୁଥାଏ । ବିଜୁଳି ଚକ୍ ଚକ୍ ମାରି ଦେଉଥାଏ । ଝଡ଼ ସେହିପରି ସାଇଁ ସାଇଁ ବହୁଥାଏ । ମୁଷଳଧାରାରେ ଝର ଝର ହୋଇ ମେଘରୁ ବର୍ଷାଧାରା

ଝରୁଥାଏ । ଏହି ସମୟରେ ସର୍ଦ୍ଦାର ଆଗକୁ ପାଦ ପକାଇ ଚାଲିଲେ । ଠାଏ ଠାଏ ରାସ୍ତା କଡ଼ ବତୀ ଦୀପ୍ ଦୀପ୍ ହୋଇ ତାଙ୍କୁ ଅଳ୍ପ ଆଲୁଅ ଦେଖାଉଥାଏ । କେତେବେଳେ ବା ବିଜୁଳିର ଚକ୍ ଚକ୍ ଆଲୁଅ ସର୍ଦ୍ଦାରଙ୍କୁ ବାଟ ଦେଖାଉଥାଏ ।

ଏ ଭିତରେ ସର୍ଦ୍ଦାର ହରଲାଲ କାପାଡ଼ିଆଙ୍କ ଘରେ ପହଞ୍ଚିଲେ । ହରଲାଲ ବଡ଼ ସାହସୀ ଓ ପରିଶ୍ରମୀ । ସର୍ଦ୍ଦାର ତାଙ୍କ ଦ୍ୱାରର କବାଟକୁ ଖଟ୍ ଖଟ୍ କଲେ । ହରଲାଲ କବାଟ ଖୋଲି ଦେଖନ୍ତି ତ ସର୍ଦ୍ଦାର ଠିଆ-ହୋଇଛନ୍ତି । ଏପରି ସମୟରେ ସର୍ଦ୍ଦାରଙ୍କୁ ଦେଖି ସେ



ଚମକି ପଡ଼ିଲେ । ସର୍ଦ୍ଦାର ଚା’ ପିଇ ଆଉ ଓଦା ଲୁଗା ବଦଳାଇ କହିଲେ, “ଚାଲ ମୋ ସାଥିରେ । ସହରର ଅବସ୍ଥା ଟିକିଏ ଦେଖିବା ।”

କାପାଡ଼ିଆ ଘର କବାଟ ଭାଙ୍ଗିବା ଲୋକ । ତେଣୁ ସମସ୍ତେ ତାଙ୍କୁ ଡରନ୍ତି । ତାଙ୍କୁ ପୁଣି ସର୍ଦ୍ଦାରଙ୍କ ସାଥିରେ

ଯିବାକୁ ପଡ଼ିଲା । ଦୁଇଜଣଯାକ ସାଥି ହୋଇ ଝଡ଼ ଭିତରେ ଗୃହରଆଡ଼ ବୁଲି ଦେଖିବାରେ ଲାଗିଲେ । କେଉଁଠି ଅଧିକ ପାଣି ଜମା ହୋଇଯାଇଥିଲା ତ କେଉଁଠି ଭୀଷଣ ସ୍ରୁଅ ଛୁଟି ଥିଲା । ଅନ୍ୟ କେଉଁଠାରେ ଅବା ରାସ୍ତା ଭାଙ୍ଗି ଯାଇଥିଲା । ସେ ଦୁଇଜଣ ସହରର ବଡ଼ ଇଞ୍ଜିନିୟରଙ୍କ ଘରକୁ ଗଲେ । ତାଙ୍କୁ ନିଦରୁ ଉଠାଇଲେ । ଓ୍ୱାର୍ଡ଼ ଜମାଦାର ଆଉ ମଜୁରିଆମାନଙ୍କୁ ଏକାଠି କଲେ । ପାଣି କିପରି ଭାବରେ ସହରରୁ ଖାଲାସ ହେବ ଏବଂ ରାସ୍ତାବାଡ଼ କିପରି ମରାମତି ହେବ ତା'ର ଆଲୋଚନା କଲେ । ସମସ୍ତେ ମିଶି କାମରେ ଲାଗିଗଲେ । ଗୃହରଦିନ ପାଏ ସର୍ଦ୍ଦାର ଆଉ ଇଞ୍ଜିନିୟରଙ୍କୁ ନିଃଶ୍ୱାସ ମାରିବାକୁ ଡର ମିଳି ନ ଥିଲା । ସମସ୍ତେ ଓଦା ସର୍ ସର୍ । ଏଣେ ଭୀଷଣ ଥଣ୍ଡା ପବନ । ତେବେ ସୁଦ୍ଧା ଅକ୍ଲାନ୍ତ ପରିଶ୍ରମ କରି ପାଣି ଖଲାସ ହେବାର ସୁବିଧା କରାଗଲା । ସର୍ଦ୍ଦାରଙ୍କୁ ଦେଖି ଲୋକ - ମାନେ ମଧ୍ୟ ପ୍ରାଣମୂର୍ଚ୍ଛା ପରିଶ୍ରମ କରିଥିଲେ ।

ଶେଷରେ ସହରର ସବୁଆଡ଼ୁ ପାଣି ଖଲାସ ହୋଇଗଲା । ତାହା ନ ହୋଇଥିଲେ ସେଦିନ ଅହମଦାବାଦ ସହରର ଅବସ୍ଥା କ'ଣ ହୋଇଥାନ୍ତା, କେହି କହିପାରିବେ ନାହିଁ । ସେହିଦିନଠାରୁ ସମସ୍ତେ ଜାଣିଲେ ଯେ, ସର୍ଦ୍ଦାର ସବୁ ବିପଦ ଆପଦରେ ସେମାନଙ୍କର ସାଥି ।



# ନେତାଜୀ ସୁଭାଷଚନ୍ଦ୍ର

ଆମ ଦେଶରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ନାମ ନ ଜାଣିଛନ୍ତି କିଏ ? ଭାରତ ମାତାଙ୍କୁ ବିଦେଶୀ ଶାସନରୁ ମୁକ୍ତ କରିବା ପାଇଁ ସେ ଯେଉଁ ସାହସିକ କାର୍ଯ୍ୟ କରିଥିଲେ ତା'ର ତୁଳନା ନାହିଁ । ତାଙ୍କର ବୀରତ୍ୱ, ସାହସ



ଓ ତ୍ୟାଗ ଅଭୁତ ଓ ଅସାଧାରଣ । ସ୍ୱାଧୀନତା ଲଢ଼େଇରେ ସେ ନିଜେ ଜୀବନର ମୋହ ଛାଡ଼ିଦେଇଥିଲେ । ସେ କିପରି ନିଜ ଜାତିର ଅପମାନ ସହିପାରୁ ନଥିଲେ, ସାହସର ସହିତ କିପରି ଅନ୍ୟାୟର ପ୍ରତିବାଦ କରୁଥିଲେ, ତାହା ଗୋଟିଏ ଘଟଣାରୁ ଜଣାପଡ଼େ ।

## ଗୋରା ଅଧ୍ୟାପକ ଶେଷରେ ମୁଣ୍ଡ ନୁଆଁଇଲେ

ସେତେବେଳେ ସୁଭାଷ ବୋଷଙ୍କର ବୟସ ୧୬ ବର୍ଷ ହୋଇଥିଲା । ସେ ମାଟ୍ରିକ ପରୀକ୍ଷାରେ ପାସ୍ କରିସାରିଥିଲେ । ହଠାତ୍ ତାଙ୍କ ମନରେ ଗୋଟିଏ ଭିନ୍ନଭାବର ଲହରୀ ଖେଳିଗଲା । ଶାନ୍ତି ପାଇବାପାଇଁ ସେ ଚାରିଆଡ଼େ ବୁଲିବାରେ ଲାଗିଲେ । ବେଳେ ବେଳେ ଘରର ଗୋଟିଏ କୋଣରେ ବସି ସେ ଘଣ୍ଟା ଘଣ୍ଟାଏ କ'ଣ ଭାବୁଥାନ୍ତି ।

ଦିନେ ସେ ସ୍ଥିର କଲେ ଯେ 'ଘନ ଜଙ୍ଗଲ ଓ ପର୍ବତ ସ୍ଥାନଗୁଡ଼ିକରେ ବୁଲି ସ୍ଥାୟୀ ଶାନ୍ତି ପାଇପାରିବେ । ତେଣୁ ସେ ଘର ଛାଡ଼ି ଚାଲିଗଲେ । ତାଙ୍କର ଘରେ ଚହଳ ପଡ଼ିଗଲା । ତାଙ୍କୁ ଚାରିଆଡ଼େ ଖୋଜା ଖୋଜି ଲାଗିଲା । କିନ୍ତୁ ସେ ଭଲ ଗୁରୁ ପାଇବା ପାଇଁ କେତେ ଜଙ୍ଗଲ ତୀର୍ଥମାନ ଏବଂ ହିମାଳୟ କୋଳରେ ବୁଲିଲେ । ଦିନେ ଦିନେ ସେ ଘନ ଅରଣ୍ୟର ହିଂସ୍ର ପଶୁମାନଙ୍କ ମଧ୍ୟରେ ଏକାକୀ ବୁଲିଲେ କିନ୍ତୁ ତାଙ୍କୁ ଶାନ୍ତି କାହିଁ ମିଳିଲା ନାହିଁ ।

ଶେଷରେ ଛଅ ମାସ ପରେ ଦିନେ ସେ ମନକୁ ଘରକୁ ଫେରି ଆସିଲେ । ଘରେ ସମସ୍ତେ ବିଶେଷତଃ ତାଙ୍କ ମାତା ଅତି ଆନନ୍ଦିତା ହେଲେ । କିନ୍ତୁ ସୁଭାଷ ଚୁପ୍ ଚାପ୍ ରହିଥାନ୍ତି ଶାରୀରିକ ପରିଶ୍ରମ ଓ ମାନସିକ ଅଶାନ୍ତି ଯୋଗୁଁ ସେ ରୋଗୀପରି ହୋଇଗଲେ । ତେବେ ସୁଦ୍ଧା ତାଙ୍କ ମନରୁ ଭାବନା ତୁଟୁ ନ ଥାଏ । ଦିନେ ସେ ନିଜର ଜଣେ ବନ୍ଧୁଙ୍କ ପାଖକୁ ଲେଖିଥିଲେ, "ପ୍ରତିଦିନ ମୁଁ

ଭୁଝୁଛି ଯେ ମୋର ଜୀବନରେ ଏକ ବଡ଼ ଲକ୍ଷ୍ୟ ରହିଛି, ଆଉ ମୋର ଦେହ ସେହି ଲକ୍ଷ୍ୟ ପୂରଣ ପାଇଁ ପ୍ରସ୍ତୁତ ହେଉଛି ।"

୧୯୧୯ ମସିହାର କଥା । ସୁଭାଷ ଆଇ.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କଲେ । ସହପାଠୀ-ମାନେ ସେତେବେଳେ ତାଙ୍କୁ ଭାରି ଖାତିର କରୁଥିଲେ । ତୁମେ ଭାବୁଥିବ ଯେ କେବଳ ଭଲ ପଢୁଥିଲେ ବୋଲି ତାଙ୍କ ସହପାଠୀମାନେ ତାଙ୍କୁ ଖାତିର କରୁଥିଲେ; ମାତ୍ର ତାହା ନୁହେଁ । ତାଙ୍କର ଦେଶପ୍ରୀତି ଯୋଗୁଁ ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ ।

ଥରେ ଜଣେ ଇଂରେଜ ଅଧ୍ୟାପକ ସେହି କଲେଜରେ ପଢ଼ାଉଥିଲେ । ସେ ବଡ଼ ଗର୍ବୀ ଥିଲେ । ଆଉ ସେ ଭାବୁଥିଲେ ଯେ ଗୋରାମାନେ ଭାରତର ମାଲିକ । କଳା ଲୋକଗୁଡ଼ାକ ସେମାନଙ୍କଠାରୁ ବହୁତ ଛୋଟ ଓ ଘୃଣ୍ୟ । ଭାରତୀୟ ଛାତ୍ରମାନଙ୍କ ପ୍ରତି ତାଙ୍କର ବ୍ୟବହାର ମଧ୍ୟ ଅତ୍ୟନ୍ତ ଖରାପ ଥିଲା । କଥା କଥାରେ ଛାତ୍ରମାନଙ୍କୁ ଅପମାନ ଦେବା ତାଙ୍କର ଅଭ୍ୟାସ ହୋଇଯାଇଥିଲା ।

ଦିନେ ସେ ଅଧ୍ୟାପକ ବି. ଏ. ଶ୍ରେଣୀରେ ଜଣେ ଭାରତୀୟ ଛାତ୍ରକୁ ଘୃଣାରେ ଗୋଟିଏ ଚାପୁଡ଼ା ମାରିଦେଲେ । ଏହି ଘଟଣା ସଙ୍ଗେ ସଙ୍ଗେ କଲେଜର ଛାତ୍ର ମହଲରେ ବ୍ୟାପିଗଲା । କଲେଜ ଭିତରେ ବିପ୍ଳବର ନିଆଁ ଖେଳିଗଲା ।

ଜାତିର ସମ୍ମାନ ଉପରେ ଆକ୍ରମଣ କିଏ ଅବା ସହିପାରିବ ? ଏଇ ନାଆଁ ଲଗାଇବାର କର୍ତ୍ତା ହେଉଛନ୍ତି ସୁଭାଷଚନ୍ଦ୍ର । ଏହି ଅପମାନର ପ୍ରତିଶୋଧ ନେବାକୁ ଛାତ୍ରମାନଙ୍କର ଗୋଟିଏ ସଭା ଡକାଗଲା । ସୁଭାଷ ଏହି ସଭାରେ ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଲେ ଏବଂ ଜାତିର ସମ୍ମାନ ରକ୍ଷା କରିବାକୁ ଛାତ୍ରମାନଙ୍କୁ ଏକଜୁଟ ହେବାପାଇଁ ଆହ୍ୱାନ କଲେ । କଲେଜରେ ହରତାଳ କରିବାକୁ ଠିକ୍ ହେଲା । ଏପରି ଭାବେ ହରତାଳ ପାଳନ କରାଗଲା ଯେ, କଲେଜର କର୍ମକର୍ତ୍ତାମାନେ ସୁଭାଷ ବୋଷଙ୍କ ସଙ୍ଗଠନ ଶକ୍ତି ଦେଖି ବିସ୍ମିତ ହୋଇଗଲେ । ଶେଷରେ କର୍ମକର୍ତ୍ତାମାନେ ମୁଣ୍ଡ



ନୁଆଁଇଲେ । ଗୋରା ଅଧ୍ୟାପକଙ୍କୁ ତାଙ୍କ ଦୁର୍ବ୍ୟବହାରକୁ ଶୀଘ୍ର ସଂଶୋଧନ କରିବାକୁ ଚେତାଇ ଦିଆଗଲା । ସେଦିନ ଗୋରା ଅଧ୍ୟାପକ ନିଜର ଭୁଲ ମାନିଗଲେ ।

# କସ୍ତୁରବା ଗାନ୍ଧୀ

ବାପୁଜୀଙ୍କର ଉପଯୁକ୍ତ ସ୍ତ୍ରୀ ଭାବରେ କସ୍ତୁରବା ସ୍ୱାମୀଙ୍କର ନୀତିଗୁଡ଼ିକୁ ଅତି ନିଷ୍ଠାର ସହିତ ପାଳିଥିଲେ । ସେ କାୟା ସାଥିରେ ଛାୟାପରି ବାପୁଜୀଙ୍କ ସମସ୍ତ କାର୍ଯ୍ୟରେ ଭାଗ ନେଇଥିଲେ । ସେ ହିନ୍ଦୁ ସ୍ତ୍ରୀମାନଙ୍କ



ମଧ୍ୟରୁ ଜଣେ ହୋଇ ସ୍ୱାମୀଙ୍କର ଭଲ ମନ୍ଦ ବୁଝିବା ସଙ୍ଗେ ସଙ୍ଗେ ଦେଶ ଆଉ ଜାତିପାଇଁ ଅନେକ ଦୁଃଖ କଷ୍ଟ ମଧ୍ୟ ସହି ଯାଇଛନ୍ତି । ସେ ପ୍ରଥମରୁ ଅତି ମରହଟ୍ଟୀ ଆଉ ନିରକ୍ଷର୍ ମହିଳା ଥିଲେ ହେଁ, ପରେ ଗାନ୍ଧିଜୀଙ୍କ ଆଦର୍ଶରେ ଚଳି ଅପର ପାଇଁ ଯେଉଁ ସ୍ନେହ, ମମତା ଓ ସେବା

ଦେଖାଇଥିଲେ, ସେଥିପାଇଁ ତାଙ୍କୁ ସମସ୍ତେ 'ମାଆ' ବୋଲି ଡାକୁଥିଲେ । ସେ ମଧ୍ୟ ବାପୁଜୀଙ୍କୁ ନାନା କାମରେ ସାହାଯ୍ୟ କରୁଥିଲେ ଏବଂ ବିପଦ ଆପଦ ବେଳେ ତାଙ୍କୁ ବଳ ଓ ସାହସ ଦେଉଥିଲେ । ଏଥିପାଇଁ ନିଜେ ବାପୁଜୀ ମଧ୍ୟ ତାଙ୍କୁ 'ମାଆ' ବୋଲି ମନେ କରୁଥିଲେ ।

ପୂଜ୍ୟା କସ୍ତୁରବାଙ୍କର ଜୀବନ କିପରି ଅତି ପବିତ୍ର ଥିଲା, ଅନ୍ୟମାନଙ୍କ ପାଇଁ ତାଙ୍କର କିପରି ସ୍ନେହ ଆଦର ଥିଲା, ସେ କିପରି ଅନ୍ୟମାନଙ୍କ ସୁଖ ସୁବିଧା ପାଇଁ ନିଜେ କଷ୍ଟ ସହୁଥିଲେ, ଆଉ ଦେଶର ସ୍ୱାଧୀନତା ଲଢ଼େଇରେ ମିଶିଥିଲେ, ତାହା ଅନେକ ଘଟଣାରୁ ଜଣାପଡ଼େ । ଏଠାରେ ଥିବା ଦୁଇଟି ଘଟଣାରୁ ତାଙ୍କର ବଡ଼ପଣିଆ ଜଣାପଡ଼ିବ ।

ମୁଁ ଆପଣଙ୍କ କୋଳରେ ମରିବି ପଛେ

ଦକ୍ଷିଣ ଆଫ୍ରିକାରେ ଗୋରାମାନଙ୍କ ଦ୍ୱାରା କଳାଲୋକଙ୍କ ଉପରେ ଭୀଷଣ ଅତ୍ୟାଚାର ହେଉଥିବା ବେଳେ, ମହାତ୍ମା ଗାନ୍ଧି ଏହାର ଦୃଢ଼ ବିରୋଧ କରି ସେଠାରେ ପଦଦଳିତ ଲୋକମାନଙ୍କ ଆଖି ଖୋଲି ଦେଇଥିଲେ । ଗାନ୍ଧିଜୀଙ୍କ ସତ୍ୟାଗ୍ରହ ଗୋରାମାନଙ୍କ ମନରେ ଚେତା ପୂରାଇ ଦେଇଥିଲା । ଏହି ସମୟରେ କସ୍ତୁରବାଙ୍କୁ ଗାନ୍ଧିଜୀ ନିଜ ପାଖକୁ ନେଇ ଯାଇଥିଲେ । କିନ୍ତୁ ସେଠାରେ କସ୍ତୁରବା ବଡ଼ ବେମାରରେ ପଡ଼ିଥିଲେ । ତାଙ୍କୁ ଭଲ କରିବା ପାଇଁ ଅସ୍ତ୍ର ଚିକିତ୍ସା ନିତାନ୍ତ ଜରୁରୀ ବୋଲି ଡାକ୍ତର ମତଦେଲେ ।

କସ୍ତୁରବା ସେତେବେଳେ ଅତି ଦୁର୍ବଳ ହୋଇଥାଆନ୍ତି । ତେବେ ଡାକ୍ତର ତାଙ୍କୁ ବେହୋସ ନ କରି ଅସ୍ତ୍ର ଚିକିତ୍ସା କଲେ, କିନ୍ତୁ କସ୍ତୁରବା ଯେତେ ଧୈର୍ଯ୍ୟ ଧରି ଏହି କଷ୍ଟ ସହିଥିଲେ ତାହା ଦେଖି ଗାନ୍ଧିଜୀଙ୍କ ଆଖି ବୁଜି ହୋଇ ଯାଇଥିଲା, ଏହି ଅସ୍ତ୍ର ଚିକିତ୍ସାରେ କସ୍ତୁରବା ଭଲ ହୋଇ-ଥିଲେ । ଡାକ୍ତର ଓ ତାଙ୍କ ସ୍ତ୍ରୀ କସ୍ତୁରବାଙ୍କର ଯଥେଷ୍ଟ ସେବା ଶୁଶ୍ରୂଷା କରିଥିଲେ ।

ଏହି ଘଟଣା ଆଫ୍ରିକାର ଡରବାନ୍‌ଠାରେ ଘଟିଥିଲା । କସ୍ତୁରବାଙ୍କର ଦେହ ସୁସ୍ଥ ହେବାରୁ ସେ ଏଠାରୁ ଜୋହାନ୍‌ସବର୍ଗ ଯାଇଥିଲେ । ହଠାତ୍ ସେଠାରେ କସ୍ତୁରବାଙ୍କ ବେମାରି ଆଉଥରେ ବଢ଼ିଗଲା । ବିଛଣାରୁ ସେ ଉଠିପାରିଲେ ନାହିଁ । ଥରେ ସେ ବେହୋସ ମଧ୍ୟ ହୋଇଥିଲେ । ଡାକ୍ତର କସ୍ତୁରବାଙ୍କ ଏ ଦଶା ଦେଖି ସେ ମାଂସ ଝୋଳ ଖାଇବା ନିତାନ୍ତ ଦରକାର ବୋଲି ମନେ କଲେ; କିନ୍ତୁ ଗାନ୍ଧିଜୀ ଡାକ୍ତରଙ୍କୁ କହିଥାଇଥିଲେ ଯେ, କସ୍ତୁରବାଙ୍କ ଔଷଧ କିମ୍ବା ପଥ୍ୟରେ ମାଂସର ଗନ୍ଧ ସୁଦ୍ଧା ରହିବ ନାହିଁ । ତେଣୁ ଡାକ୍ତର ବଡ଼ ଅଡ଼ୁଆରେ ପଡ଼ିଲେ । ସେ ଗାନ୍ଧିଜୀଙ୍କ ପାଖକୁ ତାର କଲେ, "ଆପଣଙ୍କ ସ୍ତ୍ରୀଙ୍କୁ ମାଂସ କିମ୍ବା ମାଂସ ଝୋଳ ଦେବା ନିତାନ୍ତ ଦରକାର ମନେ ହେଉଛି । ମୋତେ ଅନୁମତି ଦିଅନ୍ତୁ ।"

ଗାନ୍ଧିଜୀ ଉତ୍ତର ଦେଲେ, "ମୁଁ ଆଦୌ ଅନୁମତି ଦେଇ ପାରିବି ନାହିଁ । କସ୍ତୁରବା ଏ ବିଷୟରେ ପୂର୍ଣ୍ଣ ସ୍ୱାଧୀନ । ଆପଣ ଯଦି ଇଚ୍ଛା କରୁଛନ୍ତି, ତାଙ୍କୁ ପଚାରି ଯାହା କରନ୍ତୁ ।"

ଡାକ୍ତର କହିଲେ, "ବେମାର ସମୟରେ ମୁଁ ଏପରି ପଚାରି ପଚାରି କରିବାକୁ ଭଲ ମନେ କରୁନାହିଁ । ଆପଣ ନିଜେ ଆସନ୍ତୁ । ମୁଁ ଯେଉଁ ଜିନିଷ ଖାଇବାକୁ କହିବି, ଯଦି ଆପଣ ଅନୁମତି ନ ଦେବେ ତେବେ ଆପଣଙ୍କ ସ୍ତ୍ରୀଙ୍କ ଜୀବନ ପାଇଁ ମୁଁ ଦାୟୀ ହୋଇପାରିବି ନାହିଁ ।"

ଏହା ଶୁଣି ଗାନ୍ଧିଜୀ ଉତ୍ତରବାନ୍ ଫେରିଲେ ।

ଡାକ୍ତର ତାଙ୍କୁ ଦେଖି କହିଲେ, "ମୁଁ ମାଂସ ଝୋଳ ଦେଇସାରି ଆପଣଙ୍କୁ ତାର କରିଥିଲି ।"

ଗାନ୍ଧିଜୀ କହିଲେ, "ଡାକ୍ତର ମହାଶୟ ! ଏହା ବଡ଼ ବିଶ୍ୱାସଘାତକ କଥା ।"

ଡାକ୍ତର ହସି ହସି କହିଲେ, "ଚିକିତ୍ସା କଲାବେଳେ କୌଣସି ବିଚାର କରିବା ଦରକାର ନାହିଁ । ଆମେ ଡାକ୍ତର ଲୋକ । ବେମାରି ଭଲ ହେବା ପାଇଁ ଯାହା କରିବୁ ସେ ପୁଣ୍ୟ ! ରୋଗୀକୁ ବଞ୍ଚାଇବା ଆମର ଧର୍ମ ।"

ଗାନ୍ଧିଜୀ ଏହା ଶୁଣି ବିରକ୍ତ ହେଲେ । କିନ୍ତୁ ପରେ ଟିକିଏ ଶାନ୍ତ ହେଲେ । ଡାକ୍ତର ତାଙ୍କର ଜଣେ ଭଲପାଙ୍ଗ ଓ ଜଣେ ଭଦ୍ରଲୋକ । ସେ ଓ ତାଙ୍କର ସ୍ତ୍ରୀ ଗାନ୍ଧୀଙ୍କୁ

ସୁର ଭଲ ପାଉଥିଲେ । କିନ୍ତୁ ଗାନ୍ଧିଜୀ ଡାକ୍ତରଙ୍କର ଏପରି କାରବାର ସହିବାକୁ ପ୍ରସ୍ତୁତ ନଥିଲେ । ସେ ପଚାରିଲେ, "ଡାକ୍ତରବାବୁ ! ଏବେ ଆପଣ ସଫା କଥା କହନ୍ତୁ । ଆପଣ ତେବେ କ'ଣ କରିବାକୁ ଚାହାଁନ୍ତି ? ସ୍ତ୍ରୀକୁ ତା'ର ଇଚ୍ଛା ବିରୁଦ୍ଧରେ ମାଂସ ଖାଇବାକୁ ଦେବା ଠିକ୍ ନୁହେଁ । ତାକୁ ନ ଖାଇଲେ ସେ ଯଦି ମରିଯାଏ, ତେବେ ତାହା ମଧ୍ୟ ସହିବାକୁ ମୁଁ ପ୍ରସ୍ତୁତ ଅଛି ।"

ଡାକ୍ତର କଡ଼ାକରି କହିଲେ, "ଆପଣଙ୍କର ଏ କଥା ମୋ ଘରେ ଚଳିବ ନାହିଁ । ଯେତେଦିନ ଯାଏ ଆପଣଙ୍କ ସ୍ତ୍ରୀ ଏଠାରେ ରହିବେ, ସେତେଦିନ ଯାଏ ମୁଁ ନିଶ୍ଚୟ ତାଙ୍କୁ ମାଂସ ଅଥବା ଯାହାକିଛି ଦେବାକୁ ଠିକ୍ ମନେ କରିବି, ଦେବି । ଆପଣ ଯଦି ଏଥିରେ ରାଜି ନ ହୁଅନ୍ତି, ଏପରି ମାରିବାକୁ ଦେବି ନାହିଁ ।"

ଗାନ୍ଧିଜୀ କହିଲେ, "ତେବେ ଆପଣଙ୍କ ଇଚ୍ଛା, ମୁଁ ମୋ ସ୍ତ୍ରୀଙ୍କୁ ଏଠାରୁ ନେଇଯିବି ।

ଡାକ୍ତର ଧୀର ସ୍ୱରରେ କହିଲେ, ମୁଁ କାହିଁକି ନେଇଯିବାକୁ କହିବି ? ମୁଁ ତ ଆପଣଙ୍କୁ କହୁଛି ଯେ, ଆପଣ ମୋ ଉପରେ କୌଣସି ସର୍ତ୍ତ ରଖନ୍ତୁ ନାହିଁ । ଆମେ ଦୁ'ଜଣ ଯେତେ ଦରକାର ତାଙ୍କର ସେବା କରିବୁ । ଆପଣ ନିଶ୍ଚିନ୍ତ ରହନ୍ତୁ । ଯଦି ଆପଣ ଏହି ସରଳ କଥା ବୁଝୁ ନାହାନ୍ତି, ତେବେ ମୁଁ କହିବାକୁ ବାଧ୍ୟ ହେଉଛି ଯେ, ଆପଣ ନିଜର ସ୍ତ୍ରୀଙ୍କୁ ମୋ ଘରୁ ନେଇଯା'ନ୍ତୁ ।

ତା'ପରେ ଗାନ୍ଧିଜୀ କସ୍ତୁରବାଙ୍କ ପାଖକୁ ଯାଇଥିଲେ । କସ୍ତୁରବା ଅତି ଦୁର୍ବଳ ହୋଇଥିଲେ । ସେ ସମୟରେ ତାଙ୍କୁ ପଚାରିବା କଷ୍ଟକର ଥିଲା । ତେବେ ତାଙ୍କୁ କଥାଟା ବୁଝାଇ ଦେବା ଉଚିତ୍ ମନେକରି ଗାନ୍ଧିଜୀ ସବୁକଥା କହିଲେ । ସେ ଅତି ଦୃଢ଼ତାର ସହିତ ଉତ୍ତର ଦେଲେ, "ମୁଁ ମାଂସ ଝୋଳ ଜମା ଛୁଇଁବି ନାହିଁ । ଏହି ମନୁଷ୍ୟ ଦେହ ଯେତେବେଳେ ହେଲେ ନଷ୍ଟ ହେବ । କିନ୍ତୁ ମୁଁ ଆପଣଙ୍କ କୋଳରେ ଆନନ୍ଦରେ ମରିବି ପଛେ ମାଂସ ଖାଇ ଏ ଦେହକୁ କଳୁଷିତ କରିବି ନାହିଁ ।"

ଗାନ୍ଧିଜୀ ତାଙ୍କୁ ବୁଝାଇ କହିଲେ, "ମୋ ନୀତି ଅନୁସାରେ ଚଳିବା ବର୍ତ୍ତମାନ ଉଚିତ୍ ନୁହେଁ । ମୋର କେତେକ ଚିହ୍ନା ହିନ୍ଦୁ କବିରାଜ ଔଷଧ ସଙ୍ଗରେ ମାଂସ ବା ମାଂସ ଝୋଳ ବ୍ୟବହାର କରିବାକୁ ପରାମର୍ଶ ଦିଅନ୍ତି ।"

କିନ୍ତୁ କସ୍ତୁରବା ନିଜ କଥାରୁ ଟଳେ ହେଲେ ଘୁଞ୍ଚିଲେ ନାହିଁ । ସେ କହିଲେ, "ମୋତେ ଏଠାରୁ ନେଇଯାଅ ।"

ସେଠାରୁ ତାଙ୍କୁ କିପରି ନିଆଯିବ, ଏକ ଚିନ୍ତାର ବିଷୟ ହେଲା । ବର୍ଷାତ ଅନବରତ ହେଉଥିଲା । ସେଠାରୁ ଦୁଇ ମାଇଲ ରେଳଗାଡ଼ିରେ ଏବଂ ଅଢ଼େଇ ମାଇଲ ଦୋଳି ଡୋଳିରେ ବସାଇ ବହୁତ କଷ୍ଟରେ କସ୍ତୁରବାଙ୍କୁ ନିଆଗଲା । ଗାନ୍ଧିଜୀ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଥିଲେ । କାରଣ କସ୍ତୁରବାଙ୍କ ଅବସ୍ଥା ବଡ଼ ଶୋଚନୀୟ

ହୋଇଥିଲା । କିନ୍ତୁ ଗାନ୍ଧିଜୀ ଈଶ୍ୱରଙ୍କ ଉପରେ ଦୃଢ଼ ବିଶ୍ୱାସ ରଖିଥାନ୍ତି । ସେ କସ୍ତୁରବାଙ୍କୁ ଆଶ୍ୱାସନା ଦେବେ କିଅଣ, ଓଲଟି କସ୍ତୁରବା ତାଙ୍କୁ ଦମ୍ଭ ଦେଇ କହନ୍ତି, "ମୋର କିଛି କ୍ଷତି ହେବ ନାହିଁ । ତୁମେ କିଛି ଭାବ ନାହିଁ ।"

ତା'ପରେ କସ୍ତୁରବା ଡାଲି ଆଉ ଲୁଣ ଖିଆ ଛାଡ଼ି ଦେଲେ । ଆଉ କେତେକ ବିଷୟରେ ଅନେକ କଠୋର ନିୟମ ପାଳନ କଲେ । ଏହା ତାଙ୍କ ରୋଗ ଭଲ ହେବା ପାଇଁ ନିତାନ୍ତ ଦରକାର ଥିଲା । ତେଣୁ ସେ ଶୀଘ୍ର ଭଲ ହୋଇଗଲେ । କସ୍ତୁରବାଙ୍କ ପୂର୍ବ ସ୍ୱାସ୍ଥ୍ୟ ଫେରି ଆସିଲା ।

ମୁଁ କ'ଣ ଏଡ଼େ ନିକମା ହୋଇଛି ?

ଦକ୍ଷିଣ ଆଫ୍ରିକାରେ ଯେତେବେଳେ ଖୁବ୍ ଜୋର ସୋରରେ ସତ୍ୟାଗ୍ରହ ଚାଲିଥିଲା, ସେତେବେଳେ ମହାତ୍ମା-ଗାନ୍ଧୀ ସେଠାରେ ଫୋନିକ୍ସ ନାମକ ଏକ ସହରରେ ରହୁଥିଲେ । ଥରେ ସେ କେତେକ ଭାରତୀୟଙ୍କ ସହିତ ସତ୍ୟାଗ୍ରହ ସମ୍ବନ୍ଧରେ ଆଲୋଚନା କରୁଥିଲେ । ବାପୁଜୀ ସ୍ତ୍ରୀମାନଙ୍କୁ ସତ୍ୟାଗ୍ରହରେ ମିଶାଇବାକୁ ଇଚ୍ଛା କରୁ ନ ଥିଲେ । କାରଣ ସତ୍ୟାଗ୍ରହ କରି ଲାଠିମାଡ଼ଠାରୁ ଆରମ୍ଭ କରି ଜେଲ୍ ଯିବାଯାଏ ବହୁତ ଦୁଃଖ କଷ୍ଟ ସହିବାକୁ ପଡ଼ୁଥିଲା । ତେବେ ସେଠାରେ କେତେଜଣ ସ୍ତ୍ରୀଲୋକ ଆସି ସତ୍ୟାଗ୍ରହ କରିବେ ବୋଲି ତାଙ୍କ ପାଖରେ ଲଗାଇଲେ ।

ଗାନ୍ଧିଜୀ ସେମାନଙ୍କୁ ସତ୍ୟାଗ୍ରହ ବିଷୟରେ ବୁଝାଉଥାନ୍ତି, ଏହି ସମୟରେ କସ୍ତୁରବା ସେଠାରେ ପହଞ୍ଚିଲେ ଏବଂ କହିଲେ, "ମୋତେ ତ ଆପଣ ଏ ବିଷୟରେ କିଛି କହୁନାହାନ୍ତି ? ମୋତେ କ'ଣ ଆପଣ ବିଶ୍ୱାସ କରୁନାହାନ୍ତି ? ମୋତେ ବଡ଼ ଦୁଃଖ ଲାଗୁଛି । ମୁଁ କ'ଣ ଏତେ ନିକମା ହୋଇଛି ଯେ ଜେଲ ଯାଇପାରିବି ନାହିଁ । ଏହି ଭଉଣୀମାନେ ଯେଉଁ ବାଟରେ ଯିବାକୁ ଇଚ୍ଛା କରୁଛନ୍ତି, ମତେ ଆପଣ ସେଇ ବାଟରେ ଯିବାକୁ ଅନୁମତି ଦିଅନ୍ତୁ ।"

ଗାନ୍ଧିଜୀ କହିଲେ, "ମୁଁ ତମକୁ ଦୁଃଖ ଦେବାକୁ ଇଚ୍ଛା କରୁନାହିଁ । ଅବିଶ୍ୱାସ କରିବାର କାରଣ କିଛି ନାହିଁ । ତୁମେ ତ ସତ୍ୟାଗ୍ରହରେ ମିଶିଲେ ମୁଁ ବରଂ ସୁଖୀ ହେବି । କେବଳ ମୋ କଥାରେ ଯଦି ତୁମେ ସତ୍ୟାଗ୍ରହରେ ମିଶିବ, ଏହା ମୋତେ ଭଲ ଲାଗିବ ନାହିଁ । ଏହି ସବୁ କାମ ସମସ୍ତେ ନିଜ ନିଜର ସାହସ ବିବେଚନା ଅନୁସାରେ କରିବା ଉଚିତ । ମୋ କହିବା ଯୋଗୁଁ ଯଦି ତୁମେ କିଛି ନ ଭାବି ଏ ବାଟରେ ଚାଲିଯିବ ଏବଂ ଅଦାଲତ ଆଗରେ ଭୟରେ ଥରୁଥିବ; କିମ୍ବା ଯାଇ ଜେଲରେ କଷ୍ଟ ସହିପାରିବ ନାହିଁ ଏବଂ ସେଥିରେ ଯଦି ମୁଁ ନିଜର ଦୋଷ ଦେଖିବି ନାହିଁ, ମୋ ଅବସ୍ଥା କ'ଣ ହେବ ? ମୁଁ କିପରି ତାହା ସହିବି ଏବଂ ଦୁନିଆ ଆଗରେ ଠିଆହେବି ? ଠିକ୍ ଏଇ କାରଣ ଯୋଗୁଁ ମୁଁ ତୁମକୁ ସତ୍ୟାଗ୍ରହରେ ମିଶିବାକୁ କହୁନାହିଁ ।"

କସ୍ତୁରବା ଦୃଢ଼ସ୍ୱରରେ ଉତ୍ତର ଦେଲେ, "ମୋ ପିଲମାନେ ସତ୍ୟାଗ୍ରହର କଷ୍ଟ ସହିପାରିବେ, ଆପଣ ସବୁ ସହି ପାରିବେ । ଖାଲି ମୁଁ ଏକା ସହିପାରିବି ନାହିଁ ? ଏହା ଆପଣ କପରି ଭାବୁଛନ୍ତି ? ମୋତେ ଏଇ ଲଢ଼େଇରେ ଯୋଗ ଦେବାକୁ ପଡ଼ିବ ।"



ଗାନ୍ଧିଜୀ କହିଲେ, "ତେବେ ତୁମ୍ଭଙ୍କୁ ସତ୍ୟାଗ୍ରହରେ ମିଶାଇବାକୁ ହେବ । କିନ୍ତୁ ମୋ କଥା ଆଉ ମୋ ସ୍ୱଭାବ ତୁମେ ଜାଣିଛ । ନିଜେ ସବୁ ଭାବି ଦେଖ । ଭଲ ଖରାପ ଦୁଇ ଦିଗ ବିଚାର କର । ଏବେ ବି ସମୟ ଅଛି । ଏ ଯାବତ୍ ତୁମେ ସ୍ୱାଧୀନ । ଇଚ୍ଛା କଲେ ମିଶ, ନ ହେଲେ ନାହିଁ । ସେଥିରେ ଦୁଃଖ କରିବା ଉଚିତ ନୁହେଁ । ଏବେ ତୁମର ମତ ବଦଳାଇଲେ ବି ଲାଜ କରିବା କଥା କିଛି ନାହିଁ ।"

କସ୍ତୁରବା ପୁଣି ସେହିପରି ଉତ୍ତର ଦେଲେ, "ମୁ କିଛି ବିଚାର କରିପାରିବି ନାହିଁ । ମୁଁ ଯାହା ସ୍ଥିର କରିଛି ସେଇଆ ହିଁ ମୋ ବିଚାର, ମୋର ସତ୍ୟାଗ୍ରହରେ ମିଶିବା ନିଶ୍ଚିତ ।"

ଏହାପରେ ଗାନ୍ଧିଜୀ ଆଉ କ'ଣ କହିବେ ? କସ୍ତୁରବାଙ୍କୁ ଅନ୍ୟମାନଙ୍କ ସହ ଜଣେ ସତ୍ୟାଗ୍ରହୀ ଭାବରେ ଗ୍ରହଣ କଲେ । ସତ୍ୟାଗ୍ରହରେ ମିଶି କସ୍ତୁରବା ବହୁତ ଦୁଃଖ କଷ୍ଟ ସହିଲେ । ଜେଲ ଗଲେ, ଆଉ ସେଠାରେ ଉପାସ ଭୋକରେ ରହିଲେ । କିନ୍ତୁ ସେ ହସି ହସି ପ୍ରକୃତ ସତ୍ୟାଗ୍ରହୀ ଭାବରେ ସବୁ ଅସୁବିଧା ମୁଣ୍ଡକୁ ପୋତି ଛାତିକୁ ପଥର କରି ସହି ଯାଇଥିଲେ ।

ଭାରତକୁ ଫେରି ଆସି ମଧ୍ୟ କସ୍ତୁରବା ସ୍ୱାଧୀନତା ଲଢ଼େଇରେ ମିଶି ନିଜର ଜୀବନ ଦାନ କରିଛନ୍ତି । ଅନେକ ଥର ଜେଲ ଯାଇଛନ୍ତି ଆଉ କଠିନ ଦଣ୍ଡ ଭୋଗିଛନ୍ତି । ଏହି ସବୁ ଦୁଃଖ କଷ୍ଟକୁ ସେ ଗୌରବ ବୋଲି ଭାବି ଆନନ୍ଦରେ ଗ୍ରହଣ କରିଛନ୍ତି । ଦେଶର ମୁକ୍ତିପାଇଁ ଜାତିର ସୁଖଶାନ୍ତି ପାଇଁ ସେ ନିଜେ ଜୀବନର ଆଶା ରଖି ନ ଥିଲେ । ଏହା ହିଁ ତାଙ୍କର ମହତ୍ତ୍ୱ ଏବଂ ତାଙ୍କୁ ଆମ ଜାତିର ମାଆ ହେବାର ସମ୍ମାନ ଦିଏ ।



# ମଧୁବାବୁ

ଗାଗହଲରେ ପିଲ୍ମାନେ କହନ୍ତି,
"ପାଠ ପଢ଼ିବୁ,
କାଳିଆ ଘୋଡ଼ାରେ ଚଢ଼ିବୁ,
ମଧୁବାବୁ ସଙ୍ଗେ ଲଢ଼ିବୁ ।"

ଏ ମଧୁବାବୁ କିଏ ? ଯାହାଙ୍କୁ ଆଦର୍ଶ ରଖି ଛୋଟ ଛୋଟ ପିଲ୍ମାନେ ପାଠପଢ଼ାରେ ମନ ଦିଅନ୍ତି ଏବଂ ବଡ଼ ହେଲେ ତାଙ୍କ ପରି ହେବାକୁ ଇଚ୍ଛା କରନ୍ତି, ସେ



ହେଉଛନ୍ତି ଆମର ଏଇ ଓଡ଼ିଶା ମାଟିର ଜଣେ ଯୋଗ୍ୟ-ପୁତ୍ର, ଯାହାଙ୍କର ଚେଷ୍ଟାରେ ଆମର ଶୋଇପଡ଼ିଥିବା ଓଡ଼ିଆ ଜାତି ଚେଇଁ ଉଠିଥିଲା, ଆଉ ଅତୀତରେ

ହରାଇଥିବା ଗୌରବ ଓ ସମ୍ପଦକୁ ଫେରି ପାଇବାକୁ ଅଣ୍ଟା ଭିଡ଼ି ବାହାରିଥିଲା । ଯେଉଁ ଓଡ଼ିଆ ମୁଲକ ଆଗେ ଗଙ୍ଗାଠାରୁ ଗୋଦାବରୀଯାଏ ଲମ୍ବିଥିଲା, ସେ ଖଣ୍ଡ ଖଣ୍ଡ ହୋଇ ପରେ ଭିନ୍ନ ଭିନ୍ନ ପ୍ରଦେଶରେ ଯୋଡ଼ା ହୋଇଥିଲା । ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ନ ଥିଲା ; କିନ୍ତୁ ମଧୁବାବୁ "ଉତ୍କଳ ସମ୍ମିଳନୀ" ଗଢ଼ି ଜାତି ପାଇଁ ସମସ୍ତଙ୍କୁ ପ୍ରାଣ ଦେବାକୁ ଆହ୍ୱାନ କରିଥିଲେ ଏବଂ ଇଂରେଜ ସରକାରଙ୍କ ପାଖରେ ସମସ୍ତ ଓଡ଼ିଆ ଅଞ୍ଚଳକୁ ନେଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଦାବୀ କରିଥିଲେ । ଫଳରେ ୧୯୩୬ ଏପ୍ରିଲ ପହିଲାରେ ଓଡ଼ିଶା ପ୍ରଦେଶ ଗଢ଼ାଗଲା । ଓଡ଼ିଶା ପ୍ରଦେଶକୁ ଶିଳ୍ପ-ସମୃଦ୍ଧ ଓ ଧନଶାଳୀ କରିବା ସଙ୍ଗେ ସଙ୍ଗେ ସେ ଓଡ଼ିଶାର ଶିଳ୍ପୀମାନଙ୍କୁ ସାହାଯ୍ୟ ଓ ଉତ୍ସାହ ଦେଇଥିଲେ । ଜାତିର ଦୁର୍ଦ୍ଦଶା ଦେଖି ତାଙ୍କର ହୃଦୟ କାନ୍ଦୁଥିଲା । ସେ ଏଥିପାଇଁ ପ୍ରାଣପଣେ ଚେଷ୍ଟା କରିଥିଲେ ।

ସେ ଓଡ଼ିଆ ଜାତି ପାଇଁ ଯଥେଷ୍ଟ କାର୍ଯ୍ୟ କରିଥିବାରୁ ଯେତେ ସ୍ମରଣୀୟ ହୋଇଅଛନ୍ତି, ତା'ଠାରୁ ଅଧିକ ସ୍ମରଣୀୟ ହୋଇଛନ୍ତି—ଦରିଦ୍ର ବୁଦ୍ଧିମାନ ଛାତ୍ରଙ୍କୁ ସାହାଯ୍ୟ କରି ଏବଂ ନିଃସହାୟ ଲୋକମାନଙ୍କୁ ନିଜର ଓକିଲାତି ବଳରେ ବିପଦରୁ ଉଦ୍ଧାର କରି; ଆଉ ତୀକ୍ଷ୍ଣ ବୁଦ୍ଧିଦ୍ୱାରା ଅନେକ ଅନ୍ୟାୟୀ, ଅତ୍ୟାଚାରୀଙ୍କୁ ଉପଯୁକ୍ତ ଶିକ୍ଷାଦେଇ । ତାଙ୍କ ଜୀବନର ବିଭିନ୍ନ ଘଟଣାରେ ପ୍ରକାଶ ପାଇଥିବା ବୁଦ୍ଧିମତ୍ତାର

ପରିଚୟ ଛଳେ ଲେଖାଯାଇଥିବା ଗୋଟିଏ ମାତ୍ର ଗଳ୍ପରୁ ସହଜରେ ଜଣାପଡ଼େ ।

ବୁଦ୍ଧି ଯା'ର ବଳ ତା'ର

ମଧୁବାବୁ ସେତେବେଳେ କଟକରେ ନୂଆକରି ଓକିଲାତି କରୁଥାନ୍ତି । ସେ ଥିଲେ ଏକମାତ୍ର ଓଡ଼ିଆ ଓକିଲ । ଅନ୍ୟ ଜାତିର ଓକିଲମାନେ ପ୍ରଥମେ ତାଙ୍କୁ ଭାରି ଥଟ୍ଟା କରୁଥାନ୍ତି । କାରଣ ସେମାନଙ୍କ ସଂଖ୍ୟା ବେଶୀ ଥିଲା ଓ ଓଡ଼ିଆମାନଙ୍କ ପ୍ରତି ସେମାନଙ୍କ ଧାରଣା ଖୁବ୍ ନୀଚ ଥିଲା । ହେଲେ ମଧୁବାବୁ ଏଥିକି ଆଦୌ ଖାତିର କରୁ ନ ଥିଲେ । ପରେ ପରେ ସେମାନେ ମଧୁବାବୁଙ୍କ ବୁଦ୍ଧି ଦେଖି ତାଟକା ହେଲେ ଏବଂ ତାଙ୍କ ପାଖେ ମୁଣ୍ଡ ନୁଆଁଇଲେ । ଅନ୍ୟ ଓକିଲମାନେ କୌଣସି ମକଦ୍ଦମା ପାଇଁ ଗରୀବ ଲୋକମାନଙ୍କଠାରୁ ବେଶି ଟଙ୍କା ଦାବୀ କରୁଥିଲେ । କିନ୍ତୁ ଅଳ୍ପ ଟଙ୍କା ନେଇ ଏବଂ ଦରକାର ପଡ଼ିଲେ କିଛି ନ ନେଇ ମଧୁବାବୁ ମକଦ୍ଦମାରେ ଲଢ଼େଇ କରୁଥିଲେ । ଥରେ ଥରେ ନିଜର ବୁଦ୍ଧିବଳରେ ସେ ଅନେକ ଗଣ୍ଡଗୋଳକୁ ଆପୋଷଭାବରେ ତୁଟାଇ ଦେଉଥିଲେ । ଏଥିପାଇଁ ତାଙ୍କର ହାକ ନାଁ ଥିଲା ।

ଥରେ କ'ଣ ହୋଇଚନା ଗୋଟିଏ ବୁଢ଼ୀ କଟକ ସହରର କେଉଁ କୋଣରେ ରହୁଥିଲା । ତା'ର ନିଜର ହୋଇ·କେହି ନଥିଲେ । ତା'ଘର ଆଗରେ ଖଣ୍ଡେ ଜମିକୁ

ଛଡ଼ାଇ ନେବାକୁ ଯାଇ ପଡ଼ଶାର କେତେକ ଲୋକ ବୁଢ଼ୀକୁ ଆଖି ଦେଖାଇଲେ । ଗରୀବା ବୁଢ଼ୀକୁ ସ୍ୱାର୍ଥପରଲୋକେ ନାନା ଧମକ ଦେଇ, ମାଲି ମକଦ୍ଦମାର ଭୟ ଦେଖାଇ ତା'ଠାରୁ ଜମିତକ ନେଇଯିବାକୁ ବସିଲେ । ବିଚରା ବୁଢ଼ୀର ତ ଧନବଳ ନାହିଁ କି ଜନବଳ ନାହିଁ । କ'ଣ କରିବ ।

ଜଣେ ପାଇଁଲା, ଓକିଲମାନଙ୍କ ପାଖକୁ ଯାଇ କଥାଟା ବୁଝିବ । ଯେଉଁ ଓକିଲକୁ ପଚାରିଲା ସେ ବତାଇଲେ ପାଞ୍ଚ ଶହ ବା ହଜାରେ ଟଙ୍କା ନ ହେଲେ ହେବ ନାହିଁ । ଜମି ବାଡ଼ ମକଦ୍ଦମା ବହୁଦିନ ଲାଗିବ । ଶେଷରେ ବୁଢ଼ୀ ମଧୁବାବୁଙ୍କ ଦୁଆରେ ପହଞ୍ଚିଲା ।

ମଧୁବାବୁ ପଚାରିଲେ, "କଅଣ ମାଆ ! କାହିଁକି ମୋ ପାଖକୁ ଆସିଲ ?"

ବୁଢ଼ୀ ତାଙ୍କ ଆଗରେ ବସିପଡ଼ି ମୁଣ୍ଡରେ ହାତ ଦେଇ ସବୁ କଥା ଗୋଟି ଗୋଟି କରି କହିଗଲା । ଆଖିରୁ ଲୁହଧାର ବହି ଚାଲିଛି । ଶେଷରେ କହିଲା, "ବାପା, ତୁମେ ମୋର ଯାହା ଭରସା, ଆଉ ମୋର କେହି ନାହିଁ ।"

ମଧୁବାବୁ ସବୁ ଶୁଣିଲେ । ବୁଢ଼ୀର ଅବସ୍ଥା ଦେଖି ଓ ତା' କଥା ଶୁଣି ତାଙ୍କର ଆଖିରୁ ଦୁଇଟୋପା ଲୁହ ଗଳି ପଡ଼ିଲା । ସେ କହିଲେ, "ତୁମେ ବୁଢ଼ୀ ଲୋକ । ମାଲି-ମକଦ୍ଦମାରେ ପାରିବ ନାହିଁ । ମୁଁ ତୁମର ଦୁଆରେ ସବୁ ଅଡ଼ୁଆ ତୁଟାଇ ଦେଇ ଆସିବି । ଏଠୁ ଯାଇ ତୁମେ ତୁମ

ଘର ଆଗରେ ଗୋଟିଏ ଗାତ ଖୋଳ ଦେଇଥିବ । ମୁଁ କାଲି ସକାଳେ ଯିବି । ମତେ ତୁମେ ଅପେକ୍ଷା କରିବ ନାହିଁ । ତୁମେ ତୁମ ଘର ଭିତରେ ଥିବ ।"

ବୁଢ଼ୀଟି ଦୋଦୋପାଞ୍ଚ ହୋଇ ନିଜ ଘରକୁ ଗଲା । ମଧୁବାବୁ ଯେମିତ କହିଥିଲେ, ବୁଢ଼ୀ ସେମିତ ଗାତଟିଏ କରିଦେଲା ।

ତା'ପରଦିନ ମଧୁବାବୁ ଘୋଡ଼ା ଛୁଟାଇ ଚାଲିଲେ । ବୁଢ଼ୀ ଯେଉଁ ଗଳିରେ ଅଛି ବୋଲି କହିଥିଲା, ସେ ସେହି ଜାଗାକୁ ଗଲେ । କିଛି ନ ଜାଣିଲା ପରି ଘୋଡ଼ାଟାକୁ ସେ ଗାତ ଭିତରକୁ ନେଇଗଲେ । ଗାତରେ ଗୋଡ଼ ପଶି ଯିବାରୁ ଘୋଡ଼ା ଆଣ୍ଠେଇ ପଡ଼ିଲା ।



ମଧୁବାବୁ ହଠାତ୍ ଘୋଡ଼ା ପିଠିରୁ ଓହ୍ଲାଇ ପଡ଼ିଲେ । ରାଗରେ ନିଆଁ ହୋଇଗଲେ । "କିଏ ସେ ଏ ଗାତ ଖୋଳିଛି ? ଏ କାହାର ଜାଗା ? ତା'ର ନାଁ କୁହ ମୁଁ

ତାଙ୍କୁ ଦେଖୁଛୁ ।” ଏହା କହି ପକେଟରୁ ଚିପ୍‌ପା ଖାତା ବାହାର କଲେ ।

ଯାଇ ପଢ଼ଶାର ସବୁ ଲୋକେ ତାଙ୍କ ପାଟି ଶୁଣି ଜମା ହୋଇଗଲେ । ମନେ ମନେ ଆତଙ୍କ ଗଣିଲେ । ଏତେ ବଡ଼ ବାବୁ ଜଣେ । ତାଙ୍କ ଘୋଡ଼ା ପୁଣି ଏ ଗାଡ଼ରେ ଆଣ୍ଠୋଇ ପଡ଼ିଲା । ଆଉ କ’ଣ ତାଙ୍କୁ ରଖିବେ ? କ’ଣ ନା କ’ଣ କହିଦେବେ ? ସମସ୍ତେ ଭୟରେ ଥରହର; ଆଉ ରକ୍ଷା ନାହିଁ, କାହା ପାଟିରେ କଥା ନାହିଁ । ବୁଢ଼ୀ ଚୁପ୍ ହୋଇ କଣରେ ଥାଏ ।

ମଧୁବାବୁ ପୁଣି ରଗିକରି ପଚାରିଲେ, “ଏ ଜାଗା କାହାର ଶୀଘ୍ର କୁହ, ନ ହେଲେ ଯାହର ସମସ୍ତଙ୍କୁ ହଇରାଣ କରିବ ।”

ସମସ୍ତେ ଥରି ଥରି ଏକାବେଳକେ କହିଲେ, “ଆଜ୍ଞା, ଏ ଜମିଟା ସେ ବଦମାସ୍ ବୁଢ଼ୀର । ଆମର ଏ ଯାଗା ନୁହେଁ ।”

ମଧୁବାବୁ ରଗିଲା ପରି କହିଲେ, “ନାଁ ନାଁ ତା’ ହେବ ନାହିଁ । ତୁମେ ସବୁ ମିଛ କହୁଚ । ଖାଲି କଥାରେ କହି ଦେଲେ ହେବ ନାହିଁ, କାଗଜ କଲମରେ ଲେଖିଦଅ । ମୁ ସେ ବୁଢ଼ୀକୁ ଦେଖୁଛୁ ।”

ଯାଇର ସବୁ ଲୋକେ ସାଥି ସାଥି କାଗଜ ଖଣ୍ଡକରେ

ଲେଖିଦେଲେ ଯେ, ସେମାନଙ୍କର ସେ ଜମି ନୁହେଁ । ସେ ଜମି ବୁଢ଼ୀ ଶୋଭୀ ବେଓ୍ବାର ।

ମଧୁବାବୁ କାଗଜ ଖଣ୍ଡି ପକେଟରେ ପୂରାଇ ଘୋଡ଼ାରେ ବସିଲେ । ତା' ପରଦିନ ବୁଢ଼ୀଟି ତାଙ୍କ ବସାକୁ ଯିବାରୁ ମଧୁବାବୁ ସେ କାଗଜ ଖଣ୍ଡି ତାକୁ ଧରାଇଦେଇ କହିଲେ, "ଏଇ କାଗଜ ଖଣ୍ଡିକୁ ନିଅ । ସାଇତି ରଖିଥାଅ । କେହି ଲୋକ କେବେ ସେ ଜମି ତାଙ୍କର ବୋଲି ଦାବୀ କଲେ, ତୁମେ ଏ କାଗଜଟି ତାଙ୍କୁ ଦେଖାଇ ଦେବ ।"

ବୁଢ଼ୀ ସବୁ କଥା ଜାଣିଲା; ଆଉ ମଧୁବାବୁଙ୍କୁ ଶତ ଆଶୀର୍ବାଦ କରି ଘରକୁ ଫେରିଲା । ଘରକୁ ଫେରିଲାବେଳେ ବୁଢ଼ୀ ମନେ ମନେ ଭାବିଲା, "ସତେ ବୁଦ୍ଧି ଯା'ର ବଳ ତା'ର । ଏଇ ବୁଦ୍ଧି ପୁଣି ଭଲ ବାଟରେ ଲଗାଇଲେ ସବୁରି ଭଲ, ସବୁରି ମଙ୍ଗଳ ।"



# ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ

ମୟୂରଭଞ୍ଜ ଆମ ଓଡ଼ିଶାର ତେରଗୋଟି ଜିଲ୍ଲା ମଧ୍ୟରୁ ଗୋଟିଏ ଜିଲ୍ଲା । କିନ୍ତୁ କିଛି ବର୍ଷ ତଳେ ଏହା ଗୋଟିଏ ଅଲଗା ରାଜ୍ୟ ହୋଇ ରହିଥିଲା । ରାଜାମାନେ ସେ ରାଜ୍ୟରେ ରାଜୁତି କରୁଥିଲେ । ମୟୂରଭଞ୍ଜ ସବୁ ଗଡ଼ଜାତ ଭିତରେ



ଖୁବ୍ ଧନଶାଳୀ ଓ ଉନ୍ନତ ରାଜ୍ୟ ଥିଲା । ମହାରାଜା ରାମଚନ୍ଦ୍ର ଭଞ୍ଜ ଏକ ସମୟରେ ସେ ରାଜ୍ୟର ରାଜା ଥିଲେ । ସେ କେବଳ ସେହି ରାଜ୍ୟର ବିଭିନ୍ନ ଦିଗରେ ଉନ୍ନତି କରି ନ ଥିଲେ, ସାରା ଓଡ଼ିଶାର ଉନ୍ନତି ପାଇଁ ମନପ୍ରାଣ ଢାଳି ଦେଇଥିଲେ । ଓଡ଼ିଆ ଭାଷାର ସମୃଦ୍ଧି ପାଇଁ ସେ ଚେଷ୍ଟା କରିଥିଲେ । ଓଡ଼ିଆ ସାହିତ୍ୟର ଭଲ ଲେଖକମାନଙ୍କୁ

ଅର୍ଥିକ ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଲେଖା ଗୁଡ଼ିକୁ ଛପାଇବାର ବ୍ୟବସ୍ଥା କରିଥିଲେ । ଓଡ଼ିଶାର ଶିକ୍ଷା ବିସ୍ତାର ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦିଗରେ ମଧ୍ୟ ସାହାଯ୍ୟ କରିଥିଲେ ।

ସେ ଗୋଟିଏ ଧନୀ ଓ ଉନ୍ନତ ରାଜ୍ୟର ମହାରାଜା ହେଲେହେଁ ତାଙ୍କର ସ୍ୱଭାବ ଓ ବ୍ୟବହାର କିପରି ସରଳ ଥିଲା, ତାହା ନିମ୍ନୋକ୍ତ ଗଳ୍ପଟି ପଢ଼ିଲେ ବୁଝିପାରିବ ।

ମହାରାଜା ସତେ କେତେ ସରଳ

ଥରେ ମହାରାଜା କଲିକତା ଯାଇଥିଲେ । ରେଳ ଗାଡ଼ିରେ ଫେରିବା ସମୟରେ ହାଓଡ଼ା ଷ୍ଟେସନରେ ଟିକଟ କିଣିବାକୁ ହେବ । ହାଓଡ଼ା ଷ୍ଟେସନରେ ସବୁବେଳେ ଘୋର ଭିଡ । ବହୁତ ରେଳଗାଡ଼ି ଯିବା ଆସିବା କରୁଥାଏ । ଯାତ୍ରୀମାନଙ୍କ ଯୋଗୁ ସବୁବେଳେ ସେଠାରେ ଭାରି ଗହଳି । ଶହ ଶହ ଲୋକ ଟିକଟ କିଣିବା ପାଇଁ ଠେଲା ପେଲା ହୁଅନ୍ତି, ନ ହେଲେ ଧାଡ଼ି ହୋଇ ବହୁତ ସମୟ ଧରି ଠିଆ ହୁଅନ୍ତି । ସେମାନଙ୍କ ଭିତରେ ମହାରାଜା ବି ସେଦିନ ଟିକେଟ୍ କିଣିବାକୁ ଠିଆ ହୋଇଥାନ୍ତି ।

ସେତେବେଳେ କଟକରୁ "ଉତ୍କଳ ତାରକା" ନାମରେ ଗୋଟିଏ ଇଂରେଜୀ ଖବର କାଗଜ ବାହାରୁଥିଲା । ତା'ର ସମ୍ପାଦକ ଥିଲେ ଶ୍ରୀ କ୍ଷୀରୋଦ ଚନ୍ଦ୍ର ରାୟ । ସେ ଇଂରେଜୀ ଭାଷାରେ ଜଣେ ପ୍ରସିଦ୍ଧ ପଣ୍ଡିତ ଥିଲେ । ସେ ମଧ୍ୟ ସେଦିନ

କଲିକତାରୁ କଟକ ଆସିବେ ବୋଲି ସେଠାରେ ଟିକେଟ୍ କିଣିବାକୁ ପହଞ୍ଚିଲେ । ତାଙ୍କ ଆଖି ହଠାତ୍ ମହାରାଜାଙ୍କ ଉପରେ ପଡ଼ିଗଲା । ସେ ବଡ଼ ଆଶ୍ଚର୍ଯ୍ୟ ହେଲେ । ମହାରାଜା ନିଜେ ଏତେ ଗହଳି ଭିତରେ ପଶି ଟିକେଟ୍ କିଣୁଛନ୍ତି !

ମହାରାଜା ଟିକେଟ୍ କିଣି ବାହାରକୁ ଆସିବାରୁ କ୍ଷୀରୋଦବାବୁ ତାଙ୍କ ପାଖକୁ ଯାଇ ନମସ୍କାର କଲେ, ଆଉ ପଚାରିଲେ—"ମହାରାଜ, ଆପଣ ନିଜେ ଆସି କାହିଁକି ଏ ଗହଳିରେ ଟିକେଟ୍ କିଣୁଛନ୍ତି ? ଆପଣଙ୍କ ଲୋକମାନେ କେଉଁଠି ?"




ମହାରାଜା ହସି ହସି କହିଲେ, "କ୍ଷୀରୋଦ ବାବୁ, ଆପଣଙ୍କ ଲୋକେ କୁଆଡ଼େ ଗଲେ ? ଆପଣ ନିଜେ କାହିଁକି ଟିକଟ କିଣିବାକୁ ଏଠାକୁ ଆସିଛନ୍ତି ?"

କ୍ଷୀରୋଦବାବୁ କହିଲେ, "ଆଜ୍ଞା, କାହିଁ ମୟୂରଭଞ୍ଜର ମହାରାଜା, କାହିଁ ମୁଁ ଖଣ୍ଡେ ଖବରକାଗଜର ସମ୍ପାଦକ ? ମହାରାଜାଙ୍କ ବାର୍ଷିକ ଆୟ ୧୪।୧୫ ଲକ୍ଷ ଟଙ୍କା ହେଲା ବେଳକୁ ମୋର ବାର୍ଷିକ ଆୟ ୧୪।୧୫ ଶହ ଟଙ୍କା । ଆପଣ କାହାକୁ କାହା ସାଥିରେ ତୁଳନା କରୁଛନ୍ତି ? ଆଜିକାଲି ତ ସାମାନ୍ୟ ଜମିଦାର ଜଣେ କୁଆଡ଼େ ଗଲେ ସାଥୀରେ ଗୁମାସ୍ତା, ଚାକର, ପୂଜାରୀ, ଟହଲିଆ ଆଦି ପାଞ୍ଚ ଦଶ ଜଣଙ୍କୁ ନେଇଥାଏ, ଆଉ ଆପଣ ଏମିତି ହରିଗଣ ହୋଇ ଟିକେଟ କିଣିବା ଦେଖି ଆଶ୍ଚର୍ଯ୍ୟ ହେଲି ।"

ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଟିକିଏ ମୁରୁକି ହସି କହିଲେ, "କ୍ଷୀରୋଦ ବାବୁ ! ମୟୂରଭଞ୍ଜର ମହାରାଜା ତାଙ୍କର ନିଜର ଯୋଗ୍ୟତାବଳରେ ଏତେ ଟଙ୍କା ରୋଜଗାର କରୁନାହାନ୍ତି । ସେ ତାଙ୍କର ପୈତୃକ ସମ୍ପତ୍ତିର ଅଧିକାରୀ ମାତ୍ର । ଦୈବକ୍ରମେ ରାଜବଂଶରେ ଜନ୍ମି ସେ ମହାରାଜା ହୋଇଛନ୍ତି । କିନ୍ତୁ ଆପଣ ନିଜର ଯୋଗ୍ୟତା, ନିଜର ପାଣ୍ଡିତ୍ୟ ବଳରେ ବଡ଼ ହୋଇଛନ୍ତି । ଆଉ ଯାହା ରୋଜଗାର କରୁଛନ୍ତି ତାହା ଆପଣଙ୍କ ଝାଳବୁହା ଧନ, ସେଥିରେ ଆଉ କାହାର ପରିଶ୍ରମର ଫଳ ନାହିଁ । କିନ୍ତୁ ମୁଁ ତ ମଲ୍ଲିଙ୍କ ପରି ଅନ୍ୟ ଉପରେ ନିର୍ଭର କରି ଚଳୁଛି ?

ଆଉ ଏହି ଟିକଟ କିଣି ଆଣିବାରେ ମୋର କ'ଣ ବାହାଦୂରୀ ଅଛି ? ପିତୃଅର୍ଜିତ ରାଜ୍ୟ ନ ଥିଲେ ତ, ମୁଁ ଏହି ଷ୍ଟେସନରେ କୁଲି କାମ କରି ପେଟ ପୋଷୁଥାନ୍ତି ।"

କ୍ଷୀରୋଦ ବାବୁ ଆଉ କି ଉତ୍ତର ଦେବେ ? କିନ୍ତୁ ସେ ନିଜ ହୃଦୟରେ ଅନୁଭବ କଲେ, ମହାରାଜା କେଡ଼େ ସରଳ ଓ ଚରିତ୍ରଶୀଳ ।

